# ଗୋବର ଗୋଟେଇ

ଶ୍ରୀମାନ୍ ଚକ୍ରଧର ମହାପାତ୍ର



' ଗୋପାଦ ୧ '

ପ୍ରକାଶକ ଓ
ପୂର୍ଣ୍ଣ ସ୍ୱତ୍ୱାଧିକାରୀ—
ଭାରତୀ ତପୋବନ ସଂଘ
—ଦିଲ୍ଲୀ—

୧୯୩୦

ଆଠଅଣା

# ଗୋବର ଗୋଟେର

ଶ୍ରୀମାନ୍ ଚକ୍ରଧର ମହାପାତ୍ର



' ଗୋପାଦ ୨ '

ପ୍ରକାଶକ ଓ

ପୂର୍ଣ୍ଣ ସ୍ୱତ୍ୱାଧିକାରୀ—

ଭାରତୀ ତପୋବନ ସଂଘ

—ଦିଲ୍ଲୀ—

୧୯୩୦

ଆଠଅଣା

ବର୍ତ୍ତମାନ କାଳର ଯେଉଁ ସମାଜ-ସଂସ୍କାରକ
ଭାଇଭଉଣୀ ସମାଜବନ୍ଧନ ଏଡ଼ି
ସତ୍‌ସାହସ ସହିତ
ଅସବର୍ଣ୍ଣ ବିବାହ କରିଅଛନ୍ତି
ଏବଂ ଯାହାଙ୍କ ପ୍ରେରଣାରେ ଏହି ପୁସ୍ତକ
ଲିଖିତ ତାଙ୍କୁ ନମସ୍କାର ପୂର୍ବକ
ନିବେଦନ



୧ମ ସଂସ୍କରଣ ୧୦୦୦ ଖଣ୍ଡ ୧୩୩୭

# ଗୋବର ଗୋଟେଇ



ଅନ୍ଧାର ରାତି—ତଳେ କାଦୁଅ—ଉପରେ ମେଘ । ବର୍ଷାର ଧାରା ଗୋଟିଏ ମୁହୂର୍ତ୍ତପାଇଁ କେବେ ହେଲେ ଅଟକୁ ନାହିଁ । ଘଡ଼ଘଡ଼ି ଗଡ଼ଗଡ଼ିରେ ପୃଥିବୀ କମ୍ପି ଉଠୁଛି । ବେଳେବେଳେ ବିଜୁଳି ମାରିଦେଲେ ଦିଶୁଛି—ସଡ଼କ ଉପରେ ଅଣ୍ଟୁଏ ଉଚ୍ଚରେ ପାଣିଧାର, ବିଲ ବାଡ଼ି ସବୁ ଜଳମଗ୍ନ । ବାଟୁଆ ଲୋକ ସଞ୍ଜବେଳେ ମେଘକୁ ଦେଖି କେବେ ବୁଝି-ନ ଥିଲେ ଯେ—ଏତେ ପାଣି ମେଘ ସାଇତି ରଖିଛି, ଆଜିପାଇଁ ବୋଲି । ସୁରୁଦିନ ହେଲା ମେଘ ଧରିଥିଲା, କିଏ ଜାଣେ, ଆଜି ଏବେ ଭୁଷୁଣ୍ଡି ପାହାଡ଼ ପାଣି ଅଜାଡ଼ି ଦେବ : ଖାଲି ବର୍ଷା ହେଲେ ବାଟୋଇ ଏତେ ଅଡୁଆରେ ପଡ଼ି ନଥାନ୍ତା—ଘନ ଘନ ଚଡ଼ଚଡ଼ି ସହିତ କୁଆପଥର ବର୍ଷା—ପୁଣି ତା ସାଥିରେ ପ୍ରଳୟ ପବନ । କେଉଁକି ମଣିଷ ସହିବ ? ଗୋରୁଗାଈ ଗୋଠରୁ ଫେରି ନ ପାରି କିଏ କୁଆଡ଼େ ଯେ ଗଲେ ତାର ପତା ଗଉଡ଼ ବିଚରା ପାଇ ନାହିଁ—ସେ ତା ପ୍ରାଣ ବଞ୍ଚାଇବା ପାଇଁ ଗଛମୂଳ ଆଶ୍ରା ଧରି ଏ ପାଖ ସେ ପାଖ ହେଉଛି । ଏ ବର୍ଷା କାହାର ଇଙ୍ଗିତେ ମହତ ଅଙ୍କ

ରଖି ନାହାଁ—ସେ ବାଟୋଇ ଭିତରେ ଧନ-ବରଦ୍ଧ, ରାଜା ପ୍ରଜା ଭେଦ ଠୁଲେ ମାତ୍ର ରଖି ନାହାଁ—ତା ଦେଖନ୍ତାରେ ସବୁଏ ସମାନ ।

ସାଙ୍ଗ ପାଇଁ ବର୍ଷାଭିତରେ ଅଣ୍ଡା ବଣ୍ଡା କଛୁ ନପାଇ ଉପୋଟି ଶ୍ୟାମସୁନ୍ଦର ବାବୁ ଭନ୍ତ ଭନ୍ତ ସାଇକଲଟିକୁ ଧରି ଅଣ୍ଟୁଏ ପାଣିରେ ସଡ଼କ-ଉପରେ ଗ୍ଲୁଲଚନ୍ତି । ତାଙ୍କର ବେଶ ପୋଷାକ ଭିତରେ ମୁଣ୍ଡରେ ବଲ୍‌ଭ ହ୍ୟାଟ୍, ଗଣ୍ଡେ ହାଫ୍ ପେଣ୍ଟ୍ଲନ୍, ଦେହରେ କାମିଜ, କୋଟ—ଅଖିରେ ଚଷମା, ଗୋଡରେ ଜୁତା, ମୋଜା । ଦେହରେ ଶୁଖିଲା ହୋଇ ଖଣ୍ଡିଏ ଛନା ସୂଚା ନାହିଁ । ମୁଣ୍ଡ ଟୋପିଟି ଯୋଗେ ଯେ ସେ କୁଅପଥରୁ ଟିକଏ ରକ୍ଷା ପାଇଚନ୍ତି ଏକ୍କଦ୍ଧ ସୌଭାଗ୍ୟ ! ବାଟରେ କେଉଁଠି ଗୋଟିଏ ଗଛ ଥିଲେ ଯେ ସେ ଏପରି ଗ୍ଲୁଲନ୍ତେ ତାହା ନୁହେଁ—ଅନ୍ଧାର ଭିତରେ ବଜୁଳି ଆଲୁଅରେ ସେ କେତେଥର ଦେଖିଲେଣି—ଗୋଟିଏ ବୋଲି ଗୋଟିଏ ଗଛ ଧଣ୍ଡ ନାହିଁ । ତାପୁ ଅଲ୍ପ ବାଟ ପର୍ଯ୍ୟନ୍ତ ସାଇକେଲର ବତୀଟି ଥିଲା, ତାହା କେତେବେଳୁ ଲିଭିଗଲେଣି । ଆଜ ତାଙ୍କ ପ୍ରାଣରେ ଠୁଲେ ମାଙ୍କ ଆଶା ନାହିଁ । ବାଟ ଭୁଲ କରିଚନ୍ତି ବୋଲି ମଧ୍ୟ ତାଙ୍କର ହେଉ ନାହିଁ ! ସେ ସ୍ଥିରପରି ବର୍ଷାଭିତରେ ଚ୍ଲିଚନ୍ତି ।

ଶପଦ୍ ଅଇଲା ଦିନ ସେ ଗୋଟିଏ ହୋଇ ଆସେ ନାହିଁ—ଦଶଟି ହୋଇ ଆସେ । ଶ୍ୟାମସୁନ୍ଦର ବାବୁ ପାଣିରେ ଥଳଇଳି ହେଉ ଦେଖିବାକୁ ନ ପାଇ ଗ୍ଲୁଲଗ୍ଲ କଡ଼ଡ଼େ ହୋଇଗଲେ । ବଜୁଳି ଆଲୁଅରେ ତାଙ୍କୁ ଦୂରରେ ଗୋଟିଏ ଥୁଣ୍ଟା ଆମ୍ବଗଛ ଦିଶିଲା । ସେ ଆନନ୍ଦରେ ଅତ୍ମହରା ହୋଇ 'ଆଃ ବଞ୍ଚିଲି' ବୋଲି କହି ସେ ଗଛମୂଳକୁ ଯାଇ ଗଛମୂଳରେ ସାଇକଲ୍‌ଟି ଅଉଜାଇ ଦେଇଥିଲେ ତାଙ୍କୁ ଶୁଭିଲା ମଠ୍ ମଠ୍ ମଠ୍ । ପବନ ସୁ ସୁ ଗ୍ଲୁଲଚ—ବର୍ଷା ଦରସର ମଡ଼ୁଚି—କୁଅପଥର ଝଡ଼ ଖାଡ଼ ହୋଇ ଗହ୍ମ୍ ହେଉଚ । ତା ଭିତରେ ଏପରି ମଠ୍ ମଠ୍ ଶୁଣି ସେ

ଚମକପଡ଼ି ନାମିଷଙ୍କ ପଡ଼ଙ୍କ ଉପରକୁ ଉଠି ଆସିଲେ । ବୁଦ୍ଧିମାନ୍ ଲୋକ ନହୋଇଥିଲେ ଆଜ ସେ ଏଇଠି ଶେଷ ହୋଇଥାନ୍ତେ । ନାମିଷଙ୍କ ଗଛଟା ଘୋର ଗର୍ଜନକରି ଭାଙ୍ଗିପଡ଼ିଲା । ଭାଙ୍ଗିପଡ଼ିବା ସଙ୍ଗେ ସଙ୍ଗେ ସେ ଦେଖିଲେ ଗୋଟାଏ କି ଆଲୋକଶିଖା ଦପ୍ ଦପ୍ କରୁଚି । ତାଙ୍କ ମନ ବଡ଼ କୌତୂହଳୀ ହେଲା ତାହା ଦେଖିବାପାଇଁ । ସେ ଭାବିଲେ, ଯାହା କହନ୍ତି ପୁରୁଣା ଗଛମାନଙ୍କରେ ସବୁ ଦେବତା ଥାନ୍ତି—ଏ ସେଇ ନୁହେଁ ତ ? ତେବେ ତାଙ୍କର ସେଥିରେ ଅବିଶ୍ୱାସ ଥିଲା । ବିଶ୍ୱାସ ଆଉ ଅବିଶ୍ୱାସ ଥାଉ ଯାଇକରି ଖଣ୍ଡେ ଅଛି କି ନାହିଁ ଏବଂ ଏ ଆଲୋକଟା କଣ, ପରୀକ୍ଷା କରିବାପାଇଁ ଧୀରେ ଧୀରେ ତଳକୁ ଖସି ଦେଖିଲେ, ଗଛତଳେ ସାଇକଲ୍‌ଟି ଗୁଣ୍ଡ ହୋଇଚି । ବିଜୁଳି ମାଇଲେ ସେ ଯାହା ମାତ୍ର ଦେଖିବାକୁ ପାଉଥିଲେ । ଗଛ ଭିତରୁ ଯେଉଁ ଆଲୁଅଟା ଦେଖାଯାଉଥିଲା ତାହା ବିଷୟ ସମସ୍ତ ଧରି ଅନୁସନ୍ଧାନ କଲେ, ମାତ୍ର ତାର କିଛି ମାତ୍ର ଖୋଜ ଖବର ପାଇଲେ ନାହିଁ—ଶେଷକୁ ସଡ଼କ କାନ୍ଥରୁ ଅଣ୍ଡାଳି ଅଣ୍ଡାଳି ଖଣ୍ଡେ ଦୁଇଖଣ୍ଡ ପଥର ପାଇ ତାକୁ ସେହି ଆଲୁଅ ଉପରେ ପକାଇ ଦେଲେ । ତାଙ୍କର ଅନ୍ୟ କୌଣସି ଜୀବଜନ୍ତୁ ଭୟ ନ ଥିଲା । କାରଣ ଦେବତା କିମ୍ବା 'ଭୂତ' ପ୍ରଭୃତି କଥା ସେ ଶୁଣିଥିବାରୁ ତାହା ପରଖିବାପାଇଁ ଏପରି କରିଥିଲେ; ମାତ୍ର ଫଳରେ ବିପରୀତ ଘଟିଲା । ସଙ୍ଗେ ସଙ୍ଗେ ଏମିତି 'ଫୁ, ଫୁ' କାର ଗର୍ଜନ ଶୁଭିଲା, ଯହିଁରେ ଶ୍ୟାମବାବୁଙ୍କ ରକ୍ତ ପାଣି ହୋଇଗଲା ।

ସେ ଦେଖିଲେ ସେ ଆଲୁଅଟା ଧୀରେ ଧୀରେ ଉପରକୁ ଉଠୁଚି—ଚାହୁଁ ଚାହୁଁ ତାହା ବହୁତ ଉପରକୁ ଉଠି ଝରଅଡ଼କୁ ଚାହିଁ—ସାଇକଲ ତଳେ ପଡ଼ିଗଲା । ଆଉ ତାଙ୍କର ସନ୍ଦେହ ହେଲା ନାହିଁ—ସେ ପ୍ରାଣ ବିକଳରେ ପଳାଇଲେ ।

ସାପ ଉଡ଼ିଲେ ଯଦି ତାରବାଙ୍କରେ ଦଉଡ଼ିବ, ତେବେ ସେ ପରା ଧରଯାଉରେ ନାହିଁ—ଏ କଥାଟି ତାଙ୍କର ମନେ ଥିଲା । ସେଥିପାଇଁ ସେ ସଉଛ

ଛାଡ଼ି ଦେଇ ଏକାନ୍ତରେ କଣ୍ଟା, ବିଲ, ବଣ ଭିତରେ ପଶି ଧଉଡ଼ିଲେ । ସାପଟା ମଧ୍ୟ ନିରସ୍ତ ହେଲା ନାହିଁ । ଉପରେ ଭୀଷଣ ବର୍ଷା—କୁଅପଥର, ଘନେ, ଏଣେ ପାଦତଳେ ପାଣି କାଦୁଅ, କଣ୍ଟା, ହାଡ଼, ପଥର—ପୁଣି ପଛରେ ମହାକାଳ ମୃତ୍ୟୁଦେବତା ବିକଟ ସର୍ପ । ହାୟ ! ତାଙ୍କ ପ୍ରାଣ ଯେ କଣ ହେଉଥିଲା ସେ ଜାଣନ୍ତି । ଦଣ୍ଡିଙ୍କ ଏହିଠାରେ ତାଙ୍କର ବହୁଦିନର ଉପାର୍ଜିତ ନବୀନ ଶିକ୍ଷାଲୋକର ପରମ ଔଷଧ—ନାସ୍ତିକତା କେଉଁଆଡ଼େ ଦୂର ହୋଇଗଲା । ଯେଉଁ ଭଗବାନଙ୍କ ନାମ ଧରିଲେ ସେ କହୁଥିଲେ ଭଗବାନ୍ କିଏ ? ନିଜର କର୍ତ୍ତବ୍ୟ କର—ସୁଖ-ଦୁଃଖ କାର୍ଯ୍ୟର ପୁରସ୍କାର—ଈଶ୍ୱର ଈଶ୍ୱର ହେବାର ଲାଭ ନାହିଁ, ଏପରି କେହି ଈଶ୍ୱର ନାହିଁ, ଯେ ମନୁଷ୍ୟକୁ ବିପଦରୁ ଉଦ୍ଧାର କରେ । ମାତ୍ର ଆଜି ଆଉ ସେ ଈଶ୍ୱରବିଦ୍ୱେଷୀ ହୋଇପାରିଲେ-ନାହିଁ ।

ଭୟଙ୍କର ଦଉଡ଼ରେ ଯୋତାଯୋଡ଼ା କେଉଁଠାରେ ଯେ ଗୋଡ଼ରୁ ପଡ଼ିଗଲା ସେ ଜାଣି ନଥିଲେ । ଏଣେ ଗୋଡ଼ରେ କଣ୍ଟା ସବୁ ଝପ୍ ଝାପ୍ ହୋଇ ଭୁଙ୍କିବାକୁ ଲାଗିଲା । ଯେତେବେଳେ ସେ ପଛରୁ ଦେଖିଲେ ଯେ, ସାପଟା ତାଙ୍କର ନିକଟବର୍ତ୍ତୀ ହୋଇଯାଉଛି, ଆଉ ଉପାୟ ନାହିଁ, ପ୍ରାଣବିକଳରେ ବଙ୍କା ବାଟ ଧରି ପୁଣି ଜୋରରେ ଦଉଡ଼ିଗଲେ । ମାତ୍ର ଏଥର ତାଙ୍କର ଜୀବନ ନାଶର ଆଶଙ୍କା ଆସି ମନରେ ପଶିଲା । ଅକସ୍ମାତ୍ କାଦୁଅ ଭିତରେ ଝଟ୍‌କାଟ୍ ହୋଇ ପଡ଼ିଗଲେ । ପଡ଼ିସିନା ସଙ୍ଗେ ସଙ୍ଗେ ତାଙ୍କ କଣ୍ଠରୁ ବାହାରିଲା—'ହରି ହେ—ପ୍ରଭୁ ହେ—ଦୀନବନ୍ଧୁ ହେ, ରକ୍ଷାକର !' ଆଉ କଥା ବାହାରିଲା ନାହିଁ । ସେ କାଦୁଅ ଉପରେ ପ୍ରାଣ ଭୟରେ ପଡ଼ି କେବଳ ଦେହ ଥରଥର ହେଲେ । ଶ୍ରୀକୃଷ୍ଣଙ୍କର କାଳୀୟ-ଦଳନ, ହରିଙ୍କର ଅନନ୍ତ ଶୟନ, ସବୁ ଆସି ତାଙ୍କ ଆଖି ଆଗରେ ଦେଖାଗଲା । ସେ ଯଦିବା ହାତ ଯୋଡ଼ି ନ-ପାରିଲେ, ତଥାପି ଆଖିରୁ ଲୋତକ ଗଡ଼ାଇ ମନେ ମନେ ସେହି କାଳୀୟ ଦର୍ପାପହାରୀ ଅନନ୍ତଆସନ

ଖଗପତିଙ୍କୁ ସ୍ମରଣ କଲେ । "ପ୍ରଭୁ, ତ୍ରେତାଯୁଗରେ ତୁମେ ଯେବେ ନର-ରୂପ ରାମଚନ୍ଦ୍ର ଦେହ ଧରି ଜନ୍ମ ହୋଇଥିଲ ତୁମ୍ଭଙ୍କୁ ଇନ୍ଦ୍ରଜିତ ନାଗ-ପାଶରେ ବାନ୍ଧି ଦେଇଥିଲା, ଗରୁଡ଼କୁ ସ୍ମରଣ କରି ତୁମେ ରକ୍ଷାପାଇଥିଲ, ଆଜି ଏ ଗରିବକୁ କିଣ ରକ୍ଷା କରିବ ନାହିଁ ?" ଭକ୍ତର କାତର ଆହ୍ୱାନରେ ଭଗବାନଙ୍କର ଦୟା ଆସିଲା । କ୍ଷୀଣ ପରୀକ୍ଷାରେ ଭକ୍ତର ଅନୁଭବକୁ ଅନୁଭବ କରି ପ୍ରଭୁ ରକ୍ଷା କଲେ । ସେ ଯେ ଗୋଟିଏ ତୋଟା ଭିତରେ ପଡ଼ିଥିଲେ ତାଙ୍କୁ ଏହା ଆଦୌ ଜଣା ନଥିଲା ।

ପାପଟା ପଛରୁ ବୁଲି ବୁଲି ଆସିବାକୁ ବହୁତ ଡେରି କରିଥିଲା । ତେଣୁ ସେ ଯେତେବେଳେ ତୋଟାର ପଛପାଖ ବେତବଣଟାରେ ଆସି ପହଞ୍ଚିଲା, ସେତେବେଳେ ଆଉ ତାକୁ ମନୁଷ୍ୟଟା ଦେଖାଗଲା ନାହିଁ । ମନୁଷ୍ୟଟି ଖାତ ଭିତରେ ପଡ଼ିଥିବାରୁ ତାର ଦେଖିବାର କୌଣସି ଉପାୟ ନ ଥିଲା । ତେଣୁ ସେ ଦେଖିବାକୁ ନ ପାଇ ତୋଟାର ଏକପାଖରେ ଥିବା ଗୋଟିଏ ଗୋଟିକିଆ ଗଛ ମୂଳରେ ୩ ହାତ ଫଣା ଟେକି ସୁଦୂରଆଡ଼କୁ ବହୁତ ଚାହିଁଲା । ମାତ୍ର କୌଣସି ପ୍ରକାର କିଛି ଦେଖିପାରିଲା ନାହିଁ । ଶ୍ୟାମବାବୁଙ୍କର ଦେହ ଏତେ ନିର୍ବଳ ହୋଇଥିଲା ଯେ ସେ ଆଦୌ ପାଣି କାଦୁଅ ଭିତରୁ ଉଠିପାରିଲେ ନାହିଁ । ଏଣେ ଉଚ୍ଚସ୍ୱରରେ—'ଆର୍ତ୍ତଦାଣ ପରାୟଣଂ ମେ ଭଗବନ୍ ନାରାୟଣୋ ମେ ଗତିଃ'—ଗାଇ ଗାଇ ପାପକୁ ଖୋଜିଥାନ୍ତି । କାରଣ ପାପ ମୁଣ୍ଡରୁ ଯେ ଅଲୁଅଟି ବାହାରୁଥାଏ ତହିଁରେ ସେ ସହଜରେ ଶ୍ୟାମବାବୁଙ୍କ ପାଖରେ ଧରାପଡ଼େ । ସେ ତୋଟା ଭିତରେ; ପାପଟା ତୋଟା ବାହାରେ—କେତେ ବା ଫରକ । ପାପ ଦେଖିଲେ ଯେ ତାଙ୍କର ପ୍ରାଣ ନିଶ୍ଚୟ ଯିବ—ଏଥିରେ କିଛି କୌଣସି ସନ୍ଦେହ ନ କରି ସେହି ବିଶ୍ୱପତି ଶ୍ରୀକୃଷ୍ଣଙ୍କ ପଦାରବିନ୍ଦରେ ପ୍ରାଣଟିକୁ ସମର୍ପଣ କରି ଦେଇ ଗାଇଲେ, "ଦତ୍ତଂ ମନୋ ଯଦୁପତେ ତଦିଦଂ ଗୃହାଣ" ।

ଏଣେ ପାପର ଗଣ୍ଡବଧକୁ ଦୃଷ୍ଟିରେ ରଖି ନାରାୟଣଙ୍କୁ ସ୍ମରଣ କରୁଥାନ୍ତି । ଏପରି ନିତାନ୍ତ ନାସ୍ତିକର ଯେ ଏତେ ପରିବର୍ତ୍ତନ ହେବ, ଏହା କେହି ସ୍ୱପ୍ନରେ ଭାବି ନଥିଲେ । ମାତ୍ର ଯେଉଁ ପ୍ରଭୁଙ୍କ ଆଜ୍ଞାରେ ପଙ୍ଗୁ ଗିରିଲଙ୍ଘନ ଅସମ୍ଭବ ନୁହେଁ—ସେ ଗୋଟିଏ ଜ୍ଞାନବିବେକବାନ୍ ସଦ୍‌ବୁଦ୍ଧିସମ୍ପନ୍ନ ନାସ୍ତିକକୁ ଆସ୍ତିକ କରିବାରେ ଆଶ୍ଚର୍ଯ୍ୟ କଣ ?

ସାପଟା କିଛି କମ୍ ବଡ଼ ନଥିଲା । ଫୁଟେ ପରିଧିବିଶିଷ୍ଟ ୭।୮ ହାତ ଲମ୍ବର ସାପଟିଏ ଯେ ତାଙ୍କୁ ଗୋଟାକରେ ଗିଳି ଦେଇଥାନ୍ତା— ଏଥିରେ କୌଣସି ବୈଚିତ୍ର୍ୟ ନ ଥିଲା; ମାତ୍ର ପ୍ରଭୁ ତାଙ୍କୁ ରକ୍ଷା କଲେ । ସାପଟା ଏପାଖ ସେପାଖ ହୋଇ ଫଣା ବିସ୍ତାର କରି ସ୍ୱରଅଢ଼େ ସ୍ୱହୁଁଛି, ହଠାତ୍ ଗୋଟାଏ ପବନର ବେଗ ଝଟ୍‌କାକ କୁଆଡ଼ୁ ଅଦ୍ଭୁତ ଭାବରେ ଚାଲିଆଇଲା ।

ଆଗରୁ ତ ବର୍ଷାପବନ, କୁଅପଥର ସବୁ ଯଥାସ୍ଥାନରେ ପଡୁଥିଲା; ତା ଉପରେ ପୁଣି ଏ ପବନ ପ୍ରଳୟ ବେଗରେ ଧମକାଇ ମାଡ଼ିପଡ଼ିଲା । ହଠାତ୍ ଗୋଠା ଭିତରୁ କେତେ ଯେ ଗଛ ମଡ଼୍ ମାଡ଼୍ ଭଡ଼୍ ଭଡ଼୍ ଭାଙ୍ଗିଗଲା ତାର ସୀମା ରହିଲା ନାହିଁ । ଶ୍ୟାମବାବୁଙ୍କର କାନ ତାବଦା ହୋଇଗଲା । ସେ ଆଉ କିଛି ନଜେ ଚେଷ୍ଟା କଲେ ନାହିଁ । ଗଛମୂଳରେ ଥିଲେ ସୁଦ୍ଧା ସବୁ ପ୍ରଭୁଙ୍କ ଉପରେ ପକାଇଦେଲେ । ଦେଖିଲେ ଯେ, ସାପଟା ଯେଉଁ ଗଛମୂଳେ ଥିଲା ହଠାତ୍ ଏତେ ବେଗରେ ଗଛଟା ଦାଉଁକରି ପଡ଼ିଗଲା ଯେ ସାପଟା କେଉଁଆଡ଼େ ସେଠାରେ ମାଟିରେ ମିଶିଗଲା । ଆଉ ତାଙ୍କର ଅବିଶ୍ୱାସ କରିବାର ଉପାୟ ନ ଥିଲା । କାରଣ ସେ ଦେଖିଲେ ଯେ, ସାପର ଅଲୁଅ ମୁଣ୍ଡଟା ଟଳେପଡ଼ି ଏପାଖ ସେପାଖ ହେଉଛି, ମାତ୍ର ତାହା ଆଉ ବାହାରିବାର ଉପାୟ ନାହିଁ ।

ହରି ହେ—ତମକୁ ଛାଡ଼ି ମୂଢ଼ ବିପଦକୁ ଡାକି ଆଣିଲା ସିନା ?'
ଏତିକି କହି ନୂଆ ସାହସରେ ଶ୍ୟାମବାବୁ ଉଠିପଡ଼ିଲେ । ବାହାରେ ଟ୍ରଭା-

ହେବା ସଙ୍ଗେ ସଙ୍ଗେ ବରଷା ଯାଉଥରେ ତାଙ୍କ ଦେହ ଦଣ୍ଡକେ ସଫା ହୋଇଗଲା । ସେ ଗଛମୂଳକୁ ଯାଇ ଯାହା ଦେଖିଲେ ତାଙ୍କ ପ୍ରାଣ କାନ୍ଦି ଉଠିଲା । ଯେଉଁ ଗଛମୂଳ ଖାତ ପାଖରେ ସେ ଏତେବେଳ ପଡ଼ି ହର ହର ହେଉଥିଲେ ତାର ଠିକ୍ ଉପରିଭ ପାଖରେ ଗଛର କୋରଡ ଭିତରେ ଦେଖିଲେ କଏ ଗୋଟିଏ ପିଲା ଗୁନ ହୋଇ ଗଛକୁ ଆଉଜି ଠିଆ ହୋଇଛି । ବିଜୁଳି ଆଲୁଅରେ ଏତିକ ମାତ୍ର ଦେଖି ପାରି ଜାଣେ କିଛି ନ କହିଲେ ପିଲାଟିର ଭୟ ହେବ; ଏଥିପାଇଁ ସେ ଧୀରେ ଧୀରେ କହିଲେ—"କଏରେ ପିଲା ! କିଛି ଡର ନା—ମୁଁ ମଣିଷ । ବରଷାରେ ବାଟବଣା ହେଇଚି, ଆମେ ଦହେଁ ଏଠି ରହିଯିବା ।"

ପିଲାଟି କିଛିମାତ୍ର କହିପାରିଲା ନାହିଁ । ବଡ କଷ୍ଟରେ ଅତି କ୍ଷୀଣ କଣ୍ଠରେ 'ହଁଉ' କହିବାର ଶୁଭିଲା ମାତ୍ର ।

ଡପୋଷ୍ଟବାବୁ କୋରଡ ଭିତରେ ପଶି ପିଲାଟିକୁ ହାତରେ ଆଉଁଷି ଆଉଁଷି ଦେଖିଲେ ତା ମୁଣ୍ଡରେ ପୂରା ବାଲ ଅଛି; ତେଣୁ ତାକୁ ବାଳକା-ବୋଲି ଅଗ ଠିକ୍ କଲେ । ତାପରେ ତାର ଉଚ୍ଚତା ଅନୁଭବ କରି ଭାବିଲେ, ତାକୁ ବର୍ଷ ଦଶ ହେବ । ମୁଣ୍ଡର ବାଳ ମୁହଁର ସ୍ପର୍ଶରୁ ବୁଝିଲେ, ଅତି ଗରିବ ପିଲା । ତାକୁ ପ୍ରଥମେ କିଛି ନକହି କୋଡରେ ପୂରାଇ ଠିଆ ହେଲେ । ବାଳକାଟି ତାଙ୍କୁ କିଛି ନକହି ମନୁଷ୍ୟଆଶ୍ରା ପାଇ ଦେହକୁ ଆଉଜି ପଡ଼ିଲା । ସେ ଯେଉଁ ଚିରା ଲୁଗା ଖଣ୍ଡି ପିନ୍ଧିଥିଲା, ତାହା କେତେବେଳୁ ଓଦା ହୋଇ ଯାଇଥିଲା । କାନରେ ଗୁଡ଼ାଇ ଗଣ୍ଠି ବନ୍ଧା ହୋଇଥିଲା ଯେ, ତାହା ପାଣିରେ ଦରବଟୁଳି । ଶ୍ୟାମବାବୁ ପିଲାଟିକୁ କୋଡରେ ରଖି ଆଉଁଷି ଆଉଁଷି ସବୁ ତଥ୍ୟ ଦଣ୍ଡକେ ବୁଝିଲେ । ଅଉ ତାକୁ ଧୀରେ ଧୀରେ କଅଁଳ କରି ପଚାରିଲେ—"ମା', ତୋ ନାଁ କଣ ଲୋ ?" ସେତେବେଳକୁ ବାଳକାର ଟିକିଏ ଜ୍ଞାନ ଅସିଥିଲା । ତାର ଭୟ ମଧ୍ୟ ଦୂର ହୋଇଥିଲା ।

ଅଣ୍ଣା ପାଇଲେ ସମସ୍ତେ ସର୍ବସ୍ୱ ହୁଅନ୍ତି । ସେ ବା କିଆଁ ନ ଦେବ ? ଲଳିତ କଣ୍ଠରେ କହିଲା—"ମୋ' ନାଁ ଯେମାମଣି ।"

"ଯେମାମଣି ! ଆଃ ବଡ଼ ସୁନ୍ଦର ନାଁ ଟିଏ ? ଆଛା, ଝିଅ, ତମଘର ଏଇଠି କୁଠି କି ?"

"ହଁ ଆମଘର ଏଇ ଛୋଟା ଅରପାଖେ ବୁଡ଼ିହ ବାଟରେ । ଆମ ଗାଁ ନାଁ ଶ୍ରୀଧରପୁର ।" ଶ୍ୟାମବାବୁଙ୍କର ମୋହ ଭାଙ୍ଗିଗଲା; ସେ ଭାବିଲେ "ସହର କେଉଁଠି—ମୁଁ ଆସିଲି କେଉଁଠି କି ? ମ—କି ଦୁର୍ଦ୍ଦଶା ! ଏତେ ବାଟ ବୁଲି ଆସିଲି ? ସେଠାରୁ କହିଲେ; "ତମ ଘରେ କିଏ ଅଛନ୍ତି ?"

"ମୋର ଗୋଟିଏ ବୁଢ଼ୀମାଆ ଛଡ଼ା ଆଉ କେହି ନାହିଁ ।"

"ଆଛା—ଏଠିକି କପର ଆଇଲ ?" ଏପରି ଅଜସ୍ର ପ୍ରଶ୍ନ ପଚାରି ବଡ଼ କଷ୍ଟରେ ସେ ଏହି କଥାତକ ଶୁଣିଲେ ।

"—ଆମ ଘରେ ଅଳ୍ପ କିଛି ନଥିଲା ଖାଇବାକୁ । ବୁଢ଼ୀମାଆ ସୂତା କାଟିଥିଲେ ଯେ ସେଥିରୁ ତିନୋଟି ପଇସା, ଆଉ ମୋ ଘସି ବିକାରୁ ଦୁଇଟି ପଇସା, ଏମିତି ପାଞ୍ଚଟି ପଇସା ଘେନି ମେଳ ଥାଉ ଥାଉ ବଜାର କରି ଯାଇଥିଲି । ଆମ ଗାଁରେ ଚାଉଳ ଲୁଣ ଦରକାରୀ କିଛି ମିଳେ ନାହିଁ ଯେ, ସେଇଥିପାଇଁ ଅମେ ଦେଇ ଯେଉଁ ଗାଁ ବିକ୍ରମଗଡ଼, ସେଠିକି କିଣି ଯାଉଁ । ମୁଁ ଚାଉଳ ଦିମାଣେ କିଣି ପଇସାକୁ ଆଉ ପଇସାକର ଲୁଣ କାନିରେ ବାନ୍ଧି ତ ଏହି ଛୋଟା ଅରପାଖେ ଅଛି, ଏହି ସମୟରେ ଘୋ' ଘୋ' ବରଷା ମାଡ଼ି ଆସିଲା । ଆଗକୁ ମୁଁ ଯାଇପାରିଲି ନାହିଁ । ଏଠି ରହିଲି । ମୋତେ ଯେଉଁ ଡର ମାଡ଼ିଲା ? ମୋର ବୁଢ଼ୀମା ଉପବାସରେ ରହିଥିବ । ଆଜ ଦିନଯାକ ଆମର କିଛି ନ ଥିଲା । କାଲିର ବାସି ଭାତ ତୋରାଣି ମଦିଏ ଥିଲା ଯେ ମୁଁ ଖାଇଥିଲି—ମାଆ କିଛି ଖାଇ ନଥିଲା । ଏବୁ ନେଲେ ରୋଷେଇ କରିବୁ, ସେଠୁ ଖାଇବୁ । ମା କିମିତି ଥିବଟି ?

ଏତେବଡ଼ ଉପାସରେ, ଏଣେ ଘର ଖଣ୍ଡି ତ ଓଦା ହୋଇ ଯାଇଥିବ, ମୁଁ ହେଲେ ଥାନ୍ତି—"ଏହା କହି ବାଲକଟି କାନ୍ଦିପକାଇଲା । ଶ୍ୟାମବାବୁ ତାକୁ ଆଶ୍ୱାସନା ଦେଲେ ଏବଂ କହିଲେ, ପ୍ରଭୁ ତୋ ବୁଢ଼ୀମାର କିଛି ଅମଙ୍ଗଳ କରିବେ ନାହିଁ ।"

ସହସା ଚତୁର୍ଦ୍ଦିଗ ନିର୍ମଳ ହୋଇଗଲା, ବାଟ ଘାଟ ଏଥର ଦିଶିଗଲା । ପୂର୍ଣ୍ଣିମା ପର ଷଷ୍ଠୀ ଜହ୍ନ ଆକାଶରେ ଦେଖାଗଲା । ଖଗଦନଃଠା—କିଏ ଜାଣିଥିଲା ଏପରି ଦୁର୍ଘଟନା ଆଜ ଘଟିବ ବୋଲି । ଶ୍ୟାମବାବୁ ସେପରି ବୁଝିଥିଲେ ଗସ୍ତକୁ ଯାଇ ନଥାନ୍ତେ, ଯିବାଦ୍ୱାରା ସେ କଣ ଲାଭ କରିଚନ୍ତି, ତାହା ବୁଝିପାରିଲେ । ସେ ପରମାନନ୍ଦଙ୍କୁ ଆଜ ପାଇଚନ୍ତି । ଆଉ କଅଣ ବା ପାଆନ୍ତେ ?

ଏଥର ଚନ୍ଦ୍ରକିରଣରେ ଉଭୟେ ବାହାରକୁ ବାହାରିଲେ । ସୁଲୁ ସୁଲୁ ପବନ ବୋହୁଥିଲା । ଯେମାକୁ ପଚାରିଲେ—"ଯେମା ! ତୁ ମୋତେ ତମ ଘରକୁ ନେବୁ ? ମୋତେ ଟିକିଏ ଆଶ୍ରା ଦେବ ରହିବାକୁ ?"

ଯେମା ଦଶ ବରଷର ବାଳକ । ସେ ଚନ୍ଦ୍ର ପଟ୍ଟରେ ଦେଖିଲା ଏ ଜଣେ ବଡ଼ଲୋକ—କୋଟପେଣ୍ଟୁଲନ ପିନ୍ଧିଚନ୍ତି । ତାଙ୍କ ମୁହଁ ଭଳକୁ ସୋଧ କହିଲା—"ବାବୁ ! ଆମେ ତ ଗରିବ, ଏତେ ବଡ଼ କଥା କଣ କହି ପାରିବ—ତୁମେ ବଡ଼ଲୋକ, ମୁଁ ପରା ଗୋବରଗୋଟେଇ । ସେଥିର ଭାଗ୍ୟ ଥିଲେ ଯିନା ତମେ ଆମ ଘରକୁ ଯିବ । ଆମ ଘରକୁ ନ ଗଲେ ଗାଁରେ ପଧାନ ଘର ଅଖଡ଼ା ଘରେ ତମକୁ ଥାନ ଦବାକୁ କହିଦେବି ।"

"ମୁଁ ବଡ଼ଲୋକ ବୋଲି ତମକୁ କିଏ କହିଲା ଯେମା ?"

"ତମର ବେଶ—ତମ ମୁଣ୍ଡର ଟୋପି ।"

"ଏଇଥିରୁ କଣ ତମେ ମତେ ବଡ଼ଲୋକ ବୁଝିଲ ?"

"ହଁ ବାବୁ ! ମୋ ଭାଇ ପରା ଏମିତି ବଡ଼ଲୋକ ହୋଇଥିଲା । ମତେ ସେତେବେଳକୁ ପାଞ୍ଚବର୍ଷ । ମୋର ବାପା ସେହିବର୍ଷ ମରିଗଲେ । ସେ ଇସ୍କୁଲ ମାଷ୍ଟର ଥିଲେ । ତାଙ୍କ ପୁଅ ଥାନାରେ ଦାରୁଗା ହୋଇଥିଲା; ଦାରୁଗା ହେବାର ଛମାସ ହୋଇ ନାହିଁ, ତାର ହେଲା କଣ ଗୋଟାଏ ରୋଗ, ନେଥିରେ ସେ ମରିଗଲା, ତା' ଚିନ୍ତାରେ ମୋର ମା ମରିଗଲା । ଅଉ ଘରରେ ରହିଲା ବୁଢ଼ୀମା, ଆଉ ମୁଁ ଅଲକ୍ଷଣୀ । ଆମେ ଭାଇ ମରିବାର ତିନିବର୍ଷ ଯାଏ ବେଶ୍ ସୁଖରେ ଖାଇପିଇ ଥିଲୁଁ । ଦିନେ ସ୍ୱେର ଅମ ଘରେ ପଶି ଆମର ସମସ୍ତ ଜିନିଷପତ୍ର ଉଠାଇ ନେଇଗଲେ । ସେହିଦିନୁ ଆମର ଏହି ଦଶା । ମା'ସ୍ତ ଡାକ୍ତରଙ୍କ ଯେ ସେଥିରୁ ଭୁଲିଯିଇପା ପାଇଁ, ଆଉ ମୁଁ ଦାଣ୍ଡରୁ ଗୋବର ଗୋଟେଇ ଆଣି ଘଷିପାରେ । ତାକୁ ବିକିବାରୁ ସେଥିରେ ଦିପଇସା ମିଳେ । ଯାହା ବିଲରୁ ଆମର ଧାନ ମିଳେ ସେଥିରେ ଗୁଡ଼ମାସ ସୁରୁଖୁରୁରେ କଟିଯାଏ—ବାକି ଚାରିମାସ କଷ୍ଟ । ମା' ମୋତେ ଖୁଆଇ ନିଜେ ନ ଖାଇ ଉପାସ ଭୋକରେ ରହନ୍ତି । ତାହାକୁ କଷ୍ଟ କହନ୍ତି ନାହିଁ । ସେ କିଛି ଛୋଟ ଘରର ଝିଅ ବୋହୂ ନ ଥିଲେ । ତାଙ୍କ ବାପା ଘର ତାଙ୍କ ନିଜ ଘରର ଅଚଳାଚଳ ସମ୍ପତ୍ତି ଥିଲା । ତାହା ଏବେ ସ୍ୱେର ତସ୍କର ଘରେ । ଘରୁ ବାହାରିଲେ ଦାଣ୍ଡରେ ଲୋକେ କଣ ବୋଲିବେ ବୋଲି ସେ କାହାକୁ ମୁହଁ ଦେଖାନ୍ତି ନାହିଁ । ତାଙ୍କୁ ଏବେ ୮୦ ଉପରେ ବୟସ ହେବ । ଆହା ମା'ବୁଢ଼ୀ ମୋପାଇଁ କେତେ କଷ୍ଟ ସହନ୍ତି !"

ବାଳକାର କଥାବାର୍ତ୍ତାରୁ ବୁଝିଲେ, ଏ ବାଳିକା ଭଦ୍ରବଂଶୀୟା—ପୁଣି ଶିକ୍ଷିତା । ବହୁପରି ସମ୍ଭବତଃ ପଢ଼ିଛି । ବୁଦ୍ଧିର ଏଇଟି ପ୍ରାଣସମ୍ପନ୍ନ ହୋଇଥିବ । ଘୋର ଦୁଃଖ କଷ୍ଟ ମଧ୍ୟରେ ଏ ଏପରି ସମସ୍ତ ବିଷୟ ଅନୁଭବ କରିଛି, ଯାହା ବ୍ୟକ୍ତ କରିବାକୁ ତାକୁ ଆଦୌ ଅସୁବିଧା ହେଉ ନାହିଁ । କମ୍ପା ଅଟକୁ ନାହିଁ । ତାକୁ ଏଥର କହିଲେ—"ଆଛା, ଯେମା, ଚାଲ ତମ ଘରକୁ ଯିବା । ମୁଁ ବଡ଼ଲୋକ ନୁହେଁ; ମୋର

ପଧାନଘର ଲେଖା ନାହିଁ । ମାଆ ବୁଢ଼ୀ ତେଣେ ବିକଳ ହେଉଥିବ । ଥ—ଯିବା ।”

ଏତକ ମାତ୍ର କହି ଦୂରରେ ସାପ ପଡ଼ିଥିବା ଥାନକୁ ସୂର୍ଯ୍ୟ ଦେଖିଲେ, ସାପ ତେବେ ମୋଡ଼ି ରହିଲାଣି । ଅଉ ସେ କଥା କିଛି କହିଲେ ନାହିଁ, କାରଣ ତାଲେ ପିଲା ଭୟ କରିବ ।

ଆଗରେ ବାଳିକା, ପଛରେ ଡ଼ପୋଟି ଗୋଟିଏ ଗୋଟିଏ ଶ୍ରୀଧରପୁରକୁ ଚାଲିଲେ । ବାଟରେ ପଚାରିଲେ, “ଯେମା ! ତମର ଜାତି କଣ ?” ଯେମା କହିଲା—“ବାବୁ ! ଆମର ଜାତି କ୍ଷତ୍ରିୟ । ମୋର ବାପା ସବୁ ମଲାଯାଏ ଖଣ୍ଡା ତରୁଆର ଧରୁଥିଲେ ?”

“ହେଉ ଚାଲ—”



ବୁଢ଼ୀର ଦେହହେଲା ବେଳୁ ଅଖିରୁ ଲୁହଧାର ବନ୍ଦ ହୋଇ ନାହିଁ । ଅଉ କେଉଁଥିପାଇଁ ନୁହେଁ, କେବଳ ସେହି କୁମାରୀ ମଣିଷ ପାଇଁ । ସେ କେବଳ ମନେ ମନେ ଭାବୁଥାନ୍ତି “ହାୟ ! ମୋର ଏଇ ମୋଟା ପେଟ ସୁଟଣ୍ଡ୍ରଙ୍କ ପାଇଁ ସିନା ଆଜ ନୟନର ମଣିକୁ ବିପଦ ନଈରେ ଭସାଇ ଦେଇଚ ! କେଉଁଠି ଥିବଟି ! ଆହା କରିବାକୁ ତ କେହି ପାଖରେ ନଥିବ । ଦୁଧରେ ଗାଧୋଇ ଘିଅରେ ଅଞ୍ଚୋଉ ଥିଲା ଯେ, ତାର କପାଳରେ ଏ ଦୁଃଖ ବିଧାତା ଲେଖିଥିଲା ! କର୍ମ ମନ୍ଦ ହେଲାବେଳେ ସବୁ ଅମଙ୍ଗଳଯାକ ଅଜାଡ଼ି ହୋଇପଡ଼େ । କାଲି ତାର ବାପ ଯେତେବେଳେ ଥିଲା, ସେ ଏଇ ଗାଁ ସାଇପଡ଼ିଶାଙ୍କୁ ଖୁଆଇ ପିଆଇ ସର୍ବସ୍ୱ ସାରିଥିଲା । ଆଜି ତାର ଗେଲବସର ଦଶବରଷର ଝିଅ ପାଞ୍ଚଟି ପଇସାକୁ ସର୍ବସ୍ୱ କରି ହାଟକୁ ଯାଇ ବିପଦ-ସମୁଦ୍ରରେ ପଡ଼ିଛି । ହାୟ ଭଗବାନ୍—କେତେଦିନ ଏ ହୀନମାନ ଜୀବନକୁ ଏ ପାପ ଭିତରେ ସାଇତି ରଖିଥିବ । ପାଞ୍ଜି କଣ ଚିତ୍ରଗୁପ୍ତ ମୋର

ଯାଉ ନାହାନ୍ତି ? ମୋର ପିଲା କେଉଁଠି ପଡ଼ିଛି ? ପ୍ରଭୁ ! ସର୍ବଶୁଭରେ ଫେରାଇ ଆଣ ମୋ ଧନକୁ । ପାଣି ମନ୍ଦେ ପିଆଇ ତାକୁ ବଞ୍ଚାଇବ । ଗୋଟିଏ ଚୁମା ଦେଲେ, ଟିକିଏ କୋଳରେ ଧଇଲେ ମୋର ପ୍ରାଣ ଶୀତଳ ହେବ ।"

ବୁଢ଼ୀ ଦାଣ୍ଡରୁ ବାହାର, ବାହାରରୁ ଦାଣ୍ଡ ଏପରି ଛଟପଟ ହେଉଥାନ୍ତି, ମେଘ ଛାଡ଼ିଗଲା ପରେ ଗୁହ୍ନ ଗୁହ୍ନ ତାଙ୍କ ଆଖିରୁ ପାଣି ମଲା । ତଥାପି ମଣି କାହିଁ ? ତାଙ୍କର ମନ ହେଲା—ବାଡ଼ଖଣ୍ଡ ଧରି ବାଟକୁ ଖୋଜ ଯାଆନ୍ତେ—ମାତ୍ର ଆଖିକି ତ ଭଲ ଦଶୁ ନାହିଁ । ହାୟ ! ଭଗବାନ୍. ତୁମର କୃପାସିଂହାସନ ଆଉ କେତେ ଦୁଃଖ କଷ୍ଟ ହେଲେ ଟଳେ ? ବୁଢ଼ୀ ପୂର୍ବ ଜନ୍ମରେ କି ଦୋଷ କରିଥିଲ, ଆଜ ତୁମେ ୮୦ ବର୍ଷ ବୟସରେ ଏପରି କର୍କଳ ଏକାଦଶୀ କରି ଅଣ୍ଟାବଣ୍ଡା ଶୂନ୍ୟଭାବରେ ଚଳୁଚ ? ନାଁ ନାଁ —କବି ତ ଭଜନ ତାନରେ ଗାଇଚନ୍ତି—

"ନ ଥାନ୍ତା ରେ ଯେବେ ଘନ ଅନ୍ଧକାର କେ ବୁଝନ୍ତା
ଦିନମଣି ସନମାନ ?
ନ ଥାନ୍ତା ରେ ଯେବେ ନିଦାଘର ଖର ଧର କି
ରସନ୍ତା ବାରିଦ୍ର ତାନ ?"

ଅଙ୍କରେ ଅଙ୍କରେ ଠିକ୍ । ପଦେ ପଦେ ଠିକ୍ । କବି ଅନୁଭବର ସାକ୍ଷୀ ଦେଇଚନ୍ତି—ବୁଢ଼ୀ, ମଙ୍ଗଳମୟୀଙ୍କୁ ଚନ୍ତାକର ।

  

"ମା, ବୁଢ଼ୀ ମା—

"ଆସିଲୁ ମୋ ଧନ ଅଇଲୁଣି ଲୋ ?" କହି ବୁଢ଼ୀ ତ୍ୱରିତ ପଦକ୍ଷେପରେ ଦାଣ୍ଡକୁ ଯାଇ ଝପାଟେ ପିଠାଇଦେଲେ ଏବଂ ମଣି ଘରକୁ ପଶିଯିବା

ସଙ୍ଗେ ତାଙ୍କୁ କୋଳକୁ ଟାଣିନେଲେ । ମାତ୍ର ହଠାତ୍ ତାଙ୍କର ଦୃଷ୍ଟି ପଡ଼ିଗଲା ଶ୍ୟାମବାବୁଙ୍କ ଉପରେ । ସେ ଚମକିପଡ଼ି କହିଲେ "ସେ କିଏ ମଣି ?" "ମା ସେ ଆମର ଅତିଥି । ସେ ବଡ଼ ଲୋକ । ମୁଁ ହୋଟାଷ୍ଟେସନରେ ଭୟରେ ଜଡ଼ ସଡ଼ ହୋଇ ଯେବେ ଘଣାଅ ହୋଇଯାଉଥିଲି, ଠିକ ସେତିକିବେଳେ ସେ ମୋତେ କୋଳରେ ଧରି ମା'ଙ୍କ ଠାରେ ହୋଇଥିଲେ, ଆଉ ଆଜି ଆମ ଘରେ ରହିବେ । ବାବୁ, ଆସ ଏଣିକି ।"

ପ୍ରଥମେ ପ୍ରଥମେ ବୃଦ୍ଧା ଶ୍ୟାମବାବୁଙ୍କ ନିକଟରେ ବଡ଼ ସଂକୁଚିତ ହେଲେ; ମାତ୍ର ଶ୍ୟାମବାବୁ ଯେତେବେଳେ କହିଉଠିଲେ—"ମା, ମୁଁ ତୁମର ପରିଚୟ, ତୁମର ଅବସ୍ଥା, ସମସ୍ତ କଥା ଏହି ତୁମର ସ୍ନେହମୟୀ ମଣି ଠୁ ଶୁଣିଛି । ତୁମେ ଦେବତା, ତୁମକୁ ନମସ୍କାର । ଏହି ବାଳିକା ଯୋଗେ ମୁଁ ଅନେକ ପାଇଛି, ନଚେତ୍ କି ଅବସ୍ଥା ହୁଏ ଏ ରାତିରେ, ଭଗବାନ୍ ତା' କଣ କହିବ ?"

ବୃଦ୍ଧା କ୍ଷୀଣ ବାଷ୍ପାକୁଳିତ କଣ୍ଠରେ ତାଙ୍କର ପରିଚୟଟି ଜାଣିବାକୁ ଇଚ୍ଛା କରିବାର ଅବସର ଦେବା ଆଗରୁ ଶ୍ୟାମବାବୁ ନିଜର ସୂକ୍ଷ୍ମ ବୁଦ୍ଧିରେ କଥାଟା ଜାଣିପାରି କହିଲେ—"ମୋର ପରିଚୟ ଜାଣିବାକୁ ଆପଣ ଇଚ୍ଛା କରୁଛନ୍ତି । ଆପଣ ଜାଣିଥିବେ, ଏହି ଇଲାକାରେ ଶ୍ୟାମବାବୁ ବୋଲି ଜଣେ ସରକାରୀ କର୍ମଚାରୀ ବେଳେବେଳେ ଗସ୍ତରେ ଆସନ୍ତି, ମାଲି-ମୋକଦମା ବୁଝନ୍ତି । ମୁଁ—

ବୃଦ୍ଧୀ ଝିଅଟିର ପିଲାଟିକୁ ଧରି ଗୋଡ଼ତଳେ ପଡ଼ିଗଲେ । "ଅହୋ, କି ପୁଣ୍ୟ କରିଥିଲି—ମୋ କୁଡ଼ିଆରକୁ ମୋ ରଜା ଅତିଥି—ମୋ ହାକିମ ଅତିଥି ?"—କହି ବୃଦ୍ଧୀ କାନ୍ଦିପକାଇଲେ । ଶ୍ୟାମବାବୁ ଧଡ଼ପଡ଼ ହୋଇ ବୃଦ୍ଧୀଙ୍କୁ ଟେକି ଉଠାଇପକାଇ କହିଲେ—"ଏ କଣ ମା, ତୁମେ ମୋର

ମାଜିଷ୍ଟ୍ରେଟ—ତୁମେ ବୁଢ଼ା ଲୋକ—ଏ କଣ ? ଉଠ ଉଠ, କହି ଉଠାଇ ପକାଇଲେ । ବୁଢ଼ୀ ଉଠିପଡ଼ି କହିଲେ—"ମା, ମଣି, ମୁଁ ଏଇ ଦେବତାଙ୍କ କଥା ଡାକେ କହୁଥିଲି । ଏଇ ଟୋକା ଭାଇକ ପୁଲିଶଙ୍କର ଧରାଇଥିଲେ—ଦୈବ ତ ସହିଲା ନାହିଁ । ଆହା, ଆମର କି ଭାଗ୍ୟ ଆଜ ମଣି ! ଯା, ଯା, ଗଲୁ ଆଲୁଅଟା ଆଣିଲୁ । ଆହା, ବଡ଼ଲୋକ ଚରଣରେ କି କଷ୍ଟ ପାଇଚନ୍ତି । ଗରିବ ଦୁଆରେ ଆଜ ରାଜରାଜେଶ୍ୱର ଅଛନ୍ତି—ଆଉ ବୁଢ଼ୀ କହିପାରିଲେ ନାହିଁ ।

ଶ୍ୟାମବାବୁ ଆଶ୍ୱାସନା ଦେଇ କହିଲେ—"ମା, କିଛି ଚିନ୍ତା କର ନାହିଁ —ମୁଁ ତୁମର ବ୍ୟବହାରରେ, କଥାରେ ପରମତୃପ୍ତ । ତୁମର ଅବସ୍ଥା କଥା ଯଦି ମୁଁ ପୂର୍ବରୁ ଜାଣିଥାନ୍ତି, ହୁଏତ ତୁମେ ଏପରି ଦୁରବସ୍ଥା ଭୋଗି ନ ଥାନ୍ତ—ତେବେ—ସେଥିପାଇଁ କିଛି ମାତ୍ର ଚିନ୍ତା କର ନାହିଁ । ମୁଁ ତୁମର ପୁଅ ଜାଣ । ଏଇଗାଁରେ ଅନ୍ୟ କା ଦୁଆରକୁ ଗଲେ ମତେ ବିପୁଳ ସମ୍ବର୍ଦ୍ଧନା ମିଳିବ; ମାତ୍ର ମୁଁ ଆଦୌ ତାହା ଚାହେଁ ନାହିଁ । **ମୋର ଦୃଷ୍ଟିରେ ଖୁଦ କୁଣ୍ଡା ଅମୃତ ।** ମଣିଷ ହିସାବରେ ତୁମେ ବଡ଼ ମା, ମୁଁ ତ ପରର ଚାକର । ଛାଡ଼ ସେ କଥା ।"

ବୁଢ଼ୀ ଝଟକରି ଘରଭିତରେ ପଶି ଖଣ୍ଡିଆ ପେଡ଼ି ଖଣ୍ଡି ବାହାର କରି ତା ଭିତରୁ ଦୋରିଆ ଧୋତି ଖଣ୍ଡିଏ ଧରି ଆସି ପହଞ୍ଚିଲେ ଏବଂ କହିଲେ—"ହଜୁର ! ଗରିବର ଏ ଲୁଗାଖଣ୍ଡି ବଦଳାଇ ପକାନ୍ତୁ ।"

ଏ କଥାଟି ଶ୍ୟାମବାବୁଙ୍କୁ ଭଲ ଲାଗିଲା ନାହିଁ । ସେ ନିଜକୁ ମାଜିଷ୍ଟ୍ରେଟ ପରିଚୟ ଦେଇ ଭୁଲ କରିଛନ୍ତି, କାରଣ ବୁଢ଼ୀ ଲୁଗା ନ ଆଣିବା ପୂର୍ବରୁ ସେ ଧୀର ସ୍ୱରରେ କହୁଥିବା କଥା ଶୁଣିବାକୁ ପାଇଥିଲେ ଯେ; ସେ 'ମଣି'କୁ ଶିଖାଉଛନ୍ତି ମଣି ! ସେ ଆମର ହାକିମ,

ସେ ଅମର ରଜା ତାଙ୍କୁ ତୁ' ତା' କରନ୍ତୁ ନାହିଁ କି ? ସେ ଅଦର କଲେ ସୁଦ୍ଧା ଦେହରେ ଲଗିବୁ ନାହିଁ ସେ ପରି ବଡ଼ ଲୋକ । ଅମର ସେପରି ଭାଗ୍ୟବୋଲି ସେ ଅମପର ଗରିବ ଦୁଆରକୁ ଅସିଚନ୍ତି । ତାଙ୍କୁ, ଆଜ୍ଞା, ହଜୁର, ଏମିତି କହିବୁ ।

ଶ୍ୟାମଦାଦୁ ବର୍ତ୍ତମାନ କଥା ଶୁଣି ଭାବିଲେ, ହାସ୍ୟ ଜଗତରେ ଧର୍ମଦଳ, ଶାସକ ଦଳ, ସରଳ ନିର୍ବୋଧ-ସୁଜନ ପ୍ରଜାକୁ ନିଜ ଠାରୁ ଛୋଟ କରିବା ପାଇଁ କି ଅନ୍ୟାୟ କରି ନାହାନ୍ତି । ସୃଷ୍ଟିର ରହସ୍ୟରେ ଏକ ବିଡ଼ମ୍ବନା ! ମନୁଷ୍ୟ ମନୁଷ୍ୟଠୁ ଅଧିକ—କାହିଁରେ ଧନରେ ବଳରେ-କ୍ରୂର-କପଟତାରେ । ହାସ୍ୟରେ ସଂସାର । ଏହି ଅସୂର୍ଯ୍ୟମ୍ପଶ୍ୟା ୮୦ ବର୍ଷର ବୃଦ୍ଧାର ମୋତ୍ରିଭି କଭୟ ! କାଲିର ପିଲା ତାଙ୍କର କଣ୍ଠ ଛମୁଙ୍କ ପାଖରେ ଅନ୍ୟାୟ ଦେଖାଇ ଦିଏ, ଏଥିପାଇଁ ସେ ଏତେ ସାବଧାନ କରି—କାନେ କାନେ କହୁଛନ୍ତି । ଆଜି ସେ ସମ୍ଭାଳି ପାରିଲେ ନାହିଁ-କାତର କଣ୍ଠରେ କହିଲେ—ମା, ମା, ତୁମେ ମୋର ମା, ଯଦି ମୋତେ ପୁଅ ନ କହ କିବା ଶ୍ୟାମ ନ କହ ତେବେ ମୁଁ ତମ ଦୁଆରେ ହଜୁର ହୋଇ, ସାହେବ ହୋଇ, ଅତିଥି ହେବ ନାହିଁ । ସେ ସବୁ କୁକଥା ମା, ମୁଁ ଶାସନ କାର୍ଯ୍ୟ କରେ ବୋଲି କଣ ଦେବତା ! ଏ କୁପ୍ରବୃତ୍ତି କେତେକ ହୀନ କଦର୍ଯ୍ୟ ବ୍ୟକ୍ତି ଶାସନ ଦଣ୍ଡ ପାଇ କରନ୍ତି । **ମନୁଷ୍ୟକୁ ଦେବତା କରିବା ଏ ଦେଶରେ ଗୋଟାଏ କଳଙ୍କ** । ଏଥର ବୁଢ଼ୀଙ୍କର ଆଖିରୁ ଲୁହ ବୋହି ପଡ଼ିଲା । ସେ ଆଉ କିଛି କହି ପାରିଲେ ନାହିଁ । ଏହି କଥା ପଦକରେ ତାଙ୍କର ଭେକ ଖୋଷ କୁଆଡ଼େ ଉଭେଇ ଗଲା । ହିନ୍ଦୁ ଘରେ ଅତିଥି ଆଇଲେ ଯୋଗୀ ମାଗିଲେ, ମୁଣ୍ଡ ପୋତା ମାଗିଲେ ଚକୁଳିଆ ପଣ୍ଡା ପିତଳ ଧରି ବୁଲିଲେ ମନ କପଟ ଦପ୍ସା ଦାକ୍ଷିଣ୍ୟରେ ଦଉଡ଼େ ତାହା ପ୍ରାୟ ସମସ୍ତେ ଜାଣନ୍ତି । ଭାରତର ଗୌରବ ଏଇଥି ପାଇଁ ମାତ୍ର ପାଶ୍ଚାତ୍ୟ ଜାତିର ହୀନତା ଏଇଥିରେ । ସ୍ୱୟଂ ପାଶ୍ଚାତ୍ୟ

ନାଜରଥ ଈଶ୍ୱର ପୁତ୍ର ଯୀଶୁ ଯଦି ବର୍ତ୍ତମାନ ନ୍ୟୁୟର୍କ ସହରରେ ବୁଲନ୍ତେ ମୁଣ୍ଡରେ ଦେଇ ତଳେ ଶୋଇବା ପାଇଁ ଖଣ୍ଡିଏ ଅଳ୍ପଦାମୀ ପଥର ମାଗନ୍ତି ତେବେ ମିଳନ୍ତା ନାହିଁ ବୋଲି ପ୍ରାଚ୍ୟପାଶ୍ଚାତ୍ୟ ପରିବ୍ରାଜକ ମନୀଷୀ ବିବେକାନନ୍ଦ କହି ଯାଇଅଛନ୍ତି । ପୁଣି ଅନେକ ତ ବୁଢ଼ୀଙ୍କ ଘରେ ଅଛନ୍ତି ପରି ଅଛନ୍ତି ।—

ଡ଼ିପୋଟୀ ବାବୁ ଦେହରୁ ଓଦା ପେଣ୍ଟ, କୋଟ ପ୍ରଭୃତି ବାହାର କରି ଦେଇ ଦୋସିଆ ଲୁଗା ଖଣ୍ଡେ ପରମ ଆଦରରେ ପିନ୍ଧି ପକାଇଲେ । ଆଉ ମଣିକୁ ପାଖକୁ ଆସିବାକୁ କହିଲେ । ବୁଢ଼ୀ ମଣି ପୁଣି ହଜୁର ଆଜ୍ଞା ଅବଧାନ କଲେ ତାଙ୍କ ମନରେ କଷ୍ଟ ହେବ ଭାବି ତାଙ୍କୁ "ତୁ ଯେପରି ମା' ତାଙ୍କ ପାଇଁ କଥା ହେଉଥିଲୁ, ହେବୁ" କହି ଗୋଟିଏ ଡ଼ବର ହାତରେ ପଠାଇ ଦେଲେ । ଦୈବ ଯୋଗକୁ ସେଦିନ କିରାସିନ ଅଣ୍ଟ କରି ଥିଲା । ବୁଢ଼ୀ ଖାଇବାକୁ ନ ମିଳିଲେହେଁ ଚଳାଚଳ ବାହାର ଚଳଗୁଡ଼ିକ ଯାଇଛି ରଖି ଥାନ୍ତି ।

ଖଣ୍ଡିଆ ସନ୍ତ୍ରି ମସିଣା ଖଣ୍ଡିଏ ପକାଇ ତା ଉପରେ ଗୋଟିଏ କାଇଁତରେ ବୁଣା ଗେଟ ମସିଣା ମଣି ପକେଇ ଦେଲା । ଅନେକ ତାଙ୍କ ଘରର ସବୁ ବହୁ ମୂଲ୍ୟ ଜିନିଷ ସେ ବାହାର କରନ୍ତି । ଗରିବ ଘରେ ଝିଅ ଡାଙ୍ଗଟି ମଧ୍ୟ ପୁରୁଣା ଖଟିଆ ଅନ୍ୟା ୧୧୦୦ ଟଙ୍କାର I. C. S ଅଫିସର ଶ୍ୟାମ ବାବୁ ତାଙ୍କୁ ପୁଣି କି ଆନନ୍ଦରେ ଗ୍ରହଣ କରୁଚନ୍ତି । ପଚ୍ଛି-ରିଲେ "ମଣି ! ଏଇଟି କିଣ ତୁମେ ହାତରେ ତିଆରି କରିଚ ?

ଆଜ୍ଞା ହଁ—ମୁଁ ଘରୁ ବାଲିରୁ କାଁଇଚ ଛିଣ୍ଡାଇ ଆଣି ହାତରେ ବୁଣି-ଥିଲି । ଆମରିତ ଆଉ କିଛି ନାହିଁ—ଅମ୍ଭେମାନେ ପରି ଗରିବ, ତମ ପରି ବଡ଼ ଲୋକଙ୍କୁ କିଣ ଏଇ ଖଣ୍ଡିଆ ମସିଣାରେ ବସାଇବୁଁ ? ମା' ବଡ ଦୁଃଖ କରୁଛନ୍ତି ଅନ୍ୟା କେତେ ବଡ ଲୋକ ମୋ ଦୁଆରକୁ ଆସି କି ଦୁଃଖ ପାଉଛନ୍ତି ?

:

ଏଥର ଶ୍ୟାମ ବାବୁଙ୍କ ହୃଦ ପାଣି ହୋଇଗଲା । ସେତ ସହଜେ ବଡ଼ ଦୟାଳୁ ମଣିଷ । କେବଳ ଯେ ଈଶ୍ୱର ଈଶ୍ୱର ମାନୁ ନ ଥିଲେ । ମାତ୍ର ଦୟା ଧର୍ମ ସରଳତା ନ୍ୟାୟରେ ସେତେବେଳେ ସେ ରାଜ୍ୟରେ ତାଙ୍କ ସମାନ ଜଣେ ମାଜିଷ୍ଟ୍ରେଟ ନ ଥିଲା । ବାଲ୍ୟରୁ ସେହି ବୁଢ଼ା ସେ ତାଙ୍କର ବ୍ରାହ୍ମଣ କର୍ତ୍ତବ୍ୟ କେବେ ଭୁଲି ନ ଥିଲେ । ମାତ୍ର ଏ ଜାତି ଭେଦ—ଅସ୍ପୃଶ୍ୟତା ଏ ଗୁଡ଼ାକୁ ସେ ଆଦୌ ଗ୍ରହଣ କରୁ ନ ଥିଲେ । ଆଜ ସେ ଶ୍ରୀକୃଷ୍ଣ ହୋଇ ବିଦୁର ଘରେ ଶାଗଭାଜ ଖାଇବେ । I. C. S ଅଫିସର ! ଥରେ ଦେଖି ଯାଅ ! ଦୀନହୀନ ମଳ ମଯୀ ତୃଣ ମଧ୍ୟରେ ୧୧୦୦ ଟଙ୍କାର ପାଷ୍ଟଗ୍ରେଜର ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ମାନନୀୟ ଶ୍ୟାମ ସୁନ୍ଦର ମିଶ୍ର କମ୍ବଳ ଦୋଷିଆ ଲୁଗା ଖଣ୍ଡି ଏ ପିନ୍ଧି ଓଦା-ଘରେ ଛିଣ୍ଡା ମସିଣା ଉପରେ ବସି ଗଉଡ଼ର ପିଲାକୁ କୋଳରେ ଧରିଅଛନ୍ତି । ଧନ ! ଥରେ ସପ୍ତତଳ ଭବନରୁ ସୁରମ୍ୟ ଗାଲିଚା ଛାଡ଼ି ଏ କୁଟୀରକୁ ଓଁକମାର ଦେଖିବ କି ଦୃଶ୍ୟ ଦେଖା ଯାଉଛି—ରାଜା ! ଦୁଗ୍ଧ ଫେନନିଭ ଶଯ୍ୟାର ଶୟନ ସୁଖରୁ, ନିଜର ଅଟ୍ଟାଳିକା ରାଜ୍ୟରୁ ଥରେ ବହିଷ୍କୃତ ହୋଇ ଅବା ଉତ୍ଥାନପାଦ ହୋଇ ଏ ଗରିବ କୁଟୀରରେ ଅତିଥି ହୁଅ, ଏ ନିର୍ମଳ ସୁଖ—ଆନନ୍ଦ ଅନୁଭୂତି, ସ୍ୱର୍ଗ ପାରିଜାତ କୁଞ୍ଜରେ କିମ୍ବା ସ୍ୱର୍ଗର ନନ୍ଦନ ବନ ସମ ମନ୍ଦିରରେ କେବେ ପାଇ ନ ଥିବ । ସେହି ଜୀବନ କୁଟୀରର ମହତ୍ତ୍ୱ ପାଇ ଅଛନ୍ତି ଶ୍ୟାମ ବାବୁ ।

କୋଳକୁ ନେଇ ଯେମାକୁ ଦେଖିଲେ ସେ ଅପୂର୍ବ ସୁନ୍ଦରୀ—ମାତ୍ର ଅଭାବ—ଖାଦ୍ୟ, ତାର ଶ୍ରୀ ନଷ୍ଟ କରି ଦେଇ ଅଛି । ଶ୍ୟାମ ବାବୁ ଯୁବକ ନୁହନ୍ତି—ସେ ବର୍ତ୍ତମାନ ୩୬ ବର୍ଷର ବ୍ୟକ୍ତି । ତାଙ୍କଠାରେ ପିତୃତ୍ୱ ପୂର୍ଣ୍ଣ ରୂପେ ଅଛି । ତାଙ୍କର କନ୍ୟା ମନ୍ଦାକିନୀ ଏହାରି ବୟସରେ ତାଙ୍କୁ ଶୋକ—ସାଗରରେ ଭସାଇ ଦେଇ ଯାଇଅଛି । ତାର ମା ମଧ୍ୟ ଥିଲାକୁ ଦୁଇ ବର୍ଷ ହେଲା ସଂସାର ଛାଡ଼ି ଚାଲିଯାଇଛି—ତାଙ୍କର ଏକମାତ୍ର ପୁତ୍ର 'ସରୋଜ'

ତାଙ୍କ ନୟନର ନନ୍ଦନ, ହୃଦୟର ହାର—ପ୍ରାଣର ପ୍ରାଣ, ବଂଶଧରର ଧ୍ରୁବ ତାରା—ବର୍ତ୍ତମାନ ସେ କଲେଜରେ ପଢ଼ୁଅଛି । ହେଠେ ତାଙ୍କର ଏହି ବାଲଙ୍କାହିକୁ ଦେଖି ମହାକବିଙ୍କର ସ୍ମୃତି ମନେ ପଡ଼ିଲା । ହାୟ ! ଜମଶ୍ଚ ଏହିପରି ଦିନେ ଖୁଲିଯିବେ—ଏମାନଙ୍କ, ପ୍ରାଚୀନତା, ବର୍ବରତା କାହିଁକି ? ଆଜ ମନୁ ଯଦି ହାଲି କଣ ହୋଇଥାନ୍ତେ । ଦୀର୍ଘ ନିଃଶ୍ୱାସ ପକାଇ କେତେ କଣ ଭାବ ବାଲଙ୍କାହିକୁ ଅନେକରେ ଦେଖିଲେ ସେ ଏପରି ଅଖି ଦୁଇଟି କୌଣସି ଠାରେ କେବେ ଦେଖି ନାହାନ୍ତି । କେବଳ ସୌନ୍ଦର୍ଯ୍ୟ ରକ୍ଷା କର ଅଖି ଦୁଇଟି ମାତ୍ର ଅଛି । ଆଉ ଅଙ୍ଗ ପ୍ରତ୍ୟଙ୍ଗ ଉଚ୍ଛୃଙ୍ଖଳ ପର ହୋଇ ଯାଇଅଛି । ବାଳରେ ତେଲ ଟିକିଏ ନ ଲାଗିବାରୁ ତାହା ନିତାନ୍ତ ଅସଂଯତ ହୋଇ ପଡ଼ିଛି । ଗାଲ ଦୁଇଟି ଦାନ୍ତ ଯନ୍ତ୍ରରେ ହନୁ ହାଡ଼କୁ ଲାଗି ଯାଇଛି । ମାତ୍ର ସୁନ୍ଦର ନାକଟି ରହିଛି । ଅହା ଦୁଃଖର କଷାଘାତରେ ପିଲାଟି କି ବିକୃତ ହୋଇ ଯାଇଛି । ଧନ୍ୟ ଧନ ! ତୁମର ଧନ କଣ ପାଇଁ ଆଉ । ଯେ ହାଣ୍ଡିକୁ ବାହାର ମଧ୍ୟେ ଦୁଃଖର ବାଣୀ ଶୁଣାଇ ପାରିବ ନାହିଁ ତାକୁଡ଼ ତମେ ଦୟା କର ନାହିଁ, ଆଉ କର କାହାକୁ ?

ଏହିପରି କେତେ କଣ ଶ୍ୟାମବାବୁ ଭାବ ଭାବି ଅଖିରୁ ଲୁହ ବୁହାଇ ଦେଲେ । ଅଉ ଯେମାକୁ ପଚାରିଲେ—"ତୁମର ମା ଏହି ଘର ଚଣ୍ଡି କଣ ନଜର ?

ହଁ ଅମର ନଜର—ତେବେ ସେ ବୋଧ ହୁଏ ନିଲମ ହେବ । କହଁ ନା ୩ ବର୍ଷର ଖଜଣା ବାକି ଅଛି । ମା' ପନ୍ଧ ଫିକର କରି କରି ଥକଲେଣି ଏକାଠି ଉନି ଟଙ୍କା ଭୁଆଇ ପାରୁନାହାନ୍ତି । ଅଉ ବଲ ଅମର କେତେ ଅନ୍ଥ ଯେ ଦେତକ ତ ଯାଉଥିଲି—ତାକୁ ଏଇଠା ଇସ୍କୁଲ ପିଲେ କୃନ୍ଦା କରି ଉଠେଇ ଦେଲେ । ମଉଡ଼ ଗାଁରେ ଧନୀ ଘର ପିଲେ ଘରୁ

:

ଗୋବର ଗୋଟେଇ ଗୋବର ଗୋଟେଇ ଡାକନ୍ତି । ମୁଁ ତାହାକୁ କିଛି କହେ ନାହିଁ—ଯେଣୁ ମୁଁ ଗୋବର ସବୁକୁ ସଞ୍ଚ ଗୋଟାଉଛି । ମୋଟରେ ପଞ୍ଚାଏ ପିଲେ ଗୋବର ଗୋଟେଇ ଟଲେ, ଗୋବର ଗୋଟେଇ ଟଲେ—ବୋଲି ଭାରି ରଡ଼ାଇଲେ । ମୁଁ ଗୋବର ଗୋଟାଉଥାଏ । ଏହି ସମୟରେ ତେଣୁ ପଞ୍ଚାଏ ପିଲା ୬ କି ୭ ଜଣ ହେବେ ସବୁ ବାବୁ ବାବୁ ପିଲା ଆସି ପହଞ୍ଚି ସେ ପିଲଙ୍କୁ ଧମକ ଦେଇ ପଚାରିଲେ "ତାହାକୁ ଗୋବରଗୋଟେଇ ବୋଲି କହୁଚ ?" ସେମାନେ ଭୟରେ କିଛି ନ କହି ପଳାଇବାରୁ ମୋ ପାଖକୁ ଆସି ପଚାରିଲେ—ତୋର ନାଁ କଣ ? ତୋର କିଏ ଅଛି ? ତୋତେ ଗୋବରଗୋଟେଇ କାହିଁ ଏସବୁ କହୁଚନ୍ତି ? ସେଠୁଁ ମୁଁ କହିଲି—"ଆମେ ଭାରି ଗରିବ । ବାବୁ, ମୋର ବାବା ଭାଇ ମରି ଗଲାରୁ ସେବେ ପଣି ଆମ ଘରୁ ସବୁ ଶ୍ରେଷ୍ଠ କରି ନେଇଗଲେ । ସେଇଥିପାଇଁ ଆମେ ବଡ଼ ଗରିବ ହେଲୁଁ । ମୋର ମା ମରିଗଲା । ଅଛି ମୋର ଗୋଟିଏ ବୁଢ଼ୀ ମା ଅଛି, ଆଉ ମୁଁ । ଆମକୁ ତ ଏଠି କିଛି ମିଳୁ ନାହିଁ । ଆମେ ତ ଭିକ ମାଗିବୁ—ନାହିଁ, ଆମର ତ ଜମି ବାଡ଼ି ସବୁ ଖଜଣା ଦିଆହେଲା ନାହିଁ ବୋଲି ଜମିଦାରମାନେ ନିଲାମ କରି ନେଲେ, ଆମେ କେମିତି ଚଳିବୁ ? ମୁଁ ଗୋବର ଗୋଟେଇ ନିଏ ଯେ ତାକୁ ଘଷି ତିଆରି କରୁଁ । ଆଉ ସୂତା କାଟେ ମୋର ବୁଢ଼ୀ ମା । ଯେ ଘଷି ଆଉ ସୂତା, ଆମ ଘରକୁ ଗୋଟେ ବେପାରୀ ଆସି ପଇସା ଦେଇ ଆମଠୁଁ ନିଏ—ଆମେ ସେଥିରେ ଚଳୁଁ । ଏ ଗାଁରେ ସମସ୍ତେ ଧନୀ ଯେ ଆମକୁ ଏମିତି ଏମିତି ଚଳାନ୍ତି—ଚିଡ଼ାନ୍ତି । ମୁଁ ଏତିକି କହି କାନ୍ଦି ପକେଇଲି ।"

ସେଠୁ ସେ ସବୁ ଶୁଣି ଶୁଣି ମୋତେ ପଚାରିଲେ ତୋ ବୁଢ଼ୀମାଆକୁ କେତେ ବର୍ଷ ?

ମୁଁ କହିଲି—"ତାକୁ ଅଶୀ ବର୍ଷ । ସେମାନେ ଆମ ଘରକୁ ଆସି ମୋର ଗୁଡ଼ି ମାଟୁ ଝକୁ ବୁଦ୍ଧିଶୁଦ୍ଧି ବଳ ବଳରେ ନ ଦେବ ସେଥିପାଇଁ ଟଙ୍କା ପଠାଇ ଦେବା ପାଇଁ କହି ଯାଇଥିଲେ । ସରୋଜ ବାବୁ ତୋଲି ଜଣେ ପିଲା ତାଙ୍କ ଭିତରେ ଏମିତି ଭଲ ଯେ ସେ ଆମକୁ ତାଙ୍କ ଘରକୁ ନେଇଯିବା ପାଇଁ କହୁଥିଲେ । ମାତ୍ର ମୋର ମା ତାଙ୍କୁ ଯିବାକୁ ନାହିଁ କଲେ ଆଉ ମଧ୍ୟ ଟଙ୍କା ନେବାକୁ ନାହିଁ କଲେ । କାରଣ ନା ସେମାନେ ପିଲାଲୋକ । ତାଙ୍କ ବାପା ମା ଜାଣିଲେ ଗାଳି ଦେବେ । ମାତ୍ର ତାହା ହେଲା ନାହିଁ । କେତେ ଦିନ ପରେ ହଠାତ୍ ସରୋଜ ବାବୁ ସାଇକଲ୍‌ରେ ଆସି ମୋ ହାତରେ ଏଗାର ଦଶ ଟଙ୍କାର ନୋଟ ଧରାଇ ଦେଇ ଚାଲିଗଲେ । ସେଇଥିରେ ଆମର ଜମି ଟା ରହିଗଲା । ସେ ବାବୁ ଏବେ ଏଠି ନାହାନ୍ତି—ସହରରେ କୁଆଡ଼େ ପଢ଼ୁଛନ୍ତି ସେ—ଇସ୍କୁଲ ପଢ଼ା ତାଙ୍କର ସରିଲାଣି ।

"ଶୁଣିଲ ! ଜଣେ କହିଲ—ସରୋଜ—ସରୋଜ ।" ଓହୋ ! ସେଦିନ ମୋତେ କହିଥିଲା- ଠିକ୍ ଠିକ୍ କହିଥିଲା-ବାବା ! ଗାଁଉଳି ଝିଅ-ମାନଙ୍କ ପାଇଁ ସରକାର କଣ କୌଣସି ବନ୍ଦୋବସ୍ତ କରନାହାନ୍ତି ? ହାଯ୍, କହି ପୁଣି ଏକ ଦୀର୍ଘ ନିଶ୍ୱାସ ପକାଇଲେ ।

ତୁମେ କଣ ପାଠ ପଢ଼ିଛ ମଣି ?

ହଁ ଆଜ୍ଞା, ପଢିଛି, ମୁଁ ୪ ବର୍ଷରେ ପଢ଼ା ଆରମ୍ଭ କରି ଆଗ ଦରେ ମା ପାଖରେ ପଢୁଥିଲି ତାପରେ ଗ୍ରାମଶାଳାରେ ବର୍ଷେ ପଢି ଇସ୍କୁଲରେ ପଢିଲି । ୮ ବର୍ଷ ଯାଏ ମୁଁ ଇସ୍କୁଲରେ ପଢିଛି । ମୁଁ ଉଚ୍ଚପ୍ରାଇମେରି ପାଶ୍ କରିଥିଲି ।"

"ତୁମେ ଏତେ ଅଳ୍ପ ସମୟରେ ଏତେ ପଢି ପଢାଇଲ ? ଅହା ବୁଦ୍ଧିମତୀ ବାଳିକାଟିକୁ ଦାରିଦ୍ର୍ୟ ସର୍ବନାଶ କରି ଦେଇଛି—" ।

ଏଣେ ସବନୀମାନଙ୍କ ଉପାସରେ ଥିବା ଅଶୀବର୍ଷର ବୁଢ଼ୀ ଦେହ ବର୍ଷାଭିଜା ଚୁଲିରେ ନିଆଁ ଲଗାଇ ଭଜାହାଣ୍ଡି ବସେଇ ଓଦା ଗୁଆଳକୁ ଭାଜି ପକେଇଲେ । ତାଙ୍କର ଆଉ ଖୁସିର ସୀମା ନାହିଁ । ଗୁଆଳ ଭଜାକୁ ସିଲ ଉପରେ ବାଟି ଗୁଣ୍ଡ କରି ଢାପନରେ ରଖିଦେଲେ । ଏଣେ ହାଣ୍ଡିରେ ପାଣିଦେଇ ଭାତ ବସାଇ ଦେଲେ ।

ଏଥର ବୁଢ଼ୀଙ୍କର ଘରଦୁଆର ଦରଣ୍ଡା ଲାଗିଲା । କେଉଁଠି କିଣ ଅଛି ? ଦୈବ ଯୋଗକୁ ଗୁଡ଼ ଘଡ଼ିଟିରେ ଗୁଡ଼ ମେଞ୍ଚାଏ ହେବ ଥିଲା । ସେ ଅଧଡ଼ା ଦେଖିଲେ ଉପର ଘଡ଼ିରେ ଟୋପା ବଳିତା ତେଲ ଅଛି । ଅଳତଳ ଘଡ଼ିରେ ଦେଖିଲେ ଘିଅ ଟିକିଏ ଲାଗିଛି । ଭଜାଗୁଆଳ ଗୁଣ୍ଡକୁ ପାଣିରେ ଚକୁଳି ସେଥିରେ ଗୁଡ଼ ଘିଅଟିକେ ଗୋଳାଇ ଟିକିଏ ଖଟା ସକାଳ କଥା ଆଗନ ଘଷାଇ ପାଣି ଥୋଇ, ଗଲେ ଡାକିବାକୁ । ଯାଇ ଦେଖିଲେ, ତାଙ୍କ କୋଳରେ ମଣି ବସିଛି, ଆଉ ସେ ତା ମୁହଁକୁ ଅନାଇଁ କଣ କହୁଛନ୍ତି—

"ମଣି—ତୋ ବାବୁଙ୍କୁ ଡାକେ—ସରୁଛ ପଡ଼ିଲାଣି । 'ହଁ ମା' ଯାଉଛି" କହି ଶ୍ୟାମବାବୁ ମଣିକୁ ଧରି ଯାଇ ଦେଖିଲେ ଜଳଖିଆ ଏତେ ଯତ୍ନରେ ସଜଡ଼ା ହୋଇଛି । ସେ ପଚାରିଲେ ମା, ଏସବୁ ଆଇଲା କେଉଁଠୁ ? ମୁଁ ତ ଶୁଣିଥିଲି ଘରେ ଗୁଆଳ କଣା ନ ଥିଲା—ଏସବୁ କୁଆଡୁ ଆଇଲା ?

ମଣି କହିଲା—ନାଇଁ ମା—ମା—ସେ ଓଦା ଗୁଆଳକୁ ଭାଜି ଏମିତି ଗୁଣ୍ଡ କରିଛନ୍ତି ନା । । ତମେ ତ ବ୍ରାହ୍ମଣ ଅଟ ମା ଖାଇବ । ତମେ କଣ ଅମପରେ ଭାତ ଖାଇବ ?

"ବାଃ କିଏ କହିଲା—ମା'ଆଜି ତେଣ୍ କରୁଚନ୍ତି—ମୁଁ କଣ ଏତେ ସ୍ୱାର୍ଥପର । ମା' ମୁଁ ଥରେ କହିଛି ମୁଁ ତୁମର ପୁଅ —ଆଉ କଣ ? ନା ମୁଁ ତ ଭାତ ଖାଇବି ।"

ଶ୍ୟାମ ବାବୁ ଠିକ୍ ପିଲା ପରି ହେଲେ । ଛୁରୀକ୍ଷଣି କରି ସେଥିରୁ ଭାଗେ ରେଖାବରେ ଅଲଗା କରିଦେଇ ବାକିତକ ଦେଇ ଦେଖି ମଣିକି ଡାକିଲେ । ମଣି ପ୍ରଥମେ ଶଙ୍କା କରି ଗଲା ନାହିଁ । ତାଙ୍କୁ ଅପେ ଟାଣି ନେଇ କୋଳରେ ବସାଇ ବାବା ଝିଅ ଏକାଠି ଖାଇ ବସିଲେ ।

ମଣି ଡାକିଲା—"ତମେ ମୋର ବାବା ?"

ବୁଢ଼ୀ କହିଲେ, "ତୁ ମୋର ପୁଅ ? କି ଭାଗ୍ୟବତୀ ମୁଁ ?" ଶ୍ୟାମ ବାବୁ ଉତ୍ତର ଦେଲେ, "ହଁ ମା, ମୁଁ ତୋର ବାବା, ହଁ ମା, ମୁଁ ତୋର ପୁଅ ; ବାକିତକ ବୁଢ଼ୀଳ ଭାତ ସାନ—ଖାଇବା" କହି ମଣିକୁ ଶୁଆଇ ଦେଲେ । ମଣି ଆଉ ବୁଢ଼ୀ ଏ ଉଭୟଙ୍କର ମନ ଯେ କିଣ ହେଲା ସେ ଜାଣନ୍ତି । ଏଭଳି ଆନନ୍ଦ ତାଙ୍କ ଜୀବନରେ ପ୍ରଥମ । ବୁଢ଼ୀ ସମ୍ଭାଳି ପାରିଲେ ନାହିଁ, କହିଲେ, "ବାପା, ତୋର ଦେହେଙ୍କ ଦେଖି ଆଗରୁ କିଏ ଗୋଟିଏ ପିଲା ଅସି ଥିଲା—ମୋଘରକୁ, ଠିକ୍ ସେ ତୋପରି । ମୋତେ ଜୋର୍ କରି ଧରିଲା, ତୁମେ ଆମଘରକୁ ଆସ । ମାଏ ମୁଁ ନାହିଁ କଲି । ସେ ୪୦ ଟଙ୍କା ଆଣି ମୋ କନି ବାନ୍ଧି ଦେଇଗଲା । ଅହା, ସଂସାରରେ ଏଭଳି ଲୋକ ନଥିଲେ ଏ ଅସୁର ଯୁଗରେ ମଣିଷ କାହିଁକି ବଞ୍ଚନ୍ତା ?"

ଶ୍ୟାମ ବାବୁ କହିଲେ—"ବୁଝିଛି ମା, ବୁଝିଛି, ସେ ପିଲାଟି ମୋର ପୁଅ ; ମୋର୍ ସେଇ ଗୋଟିଏ କୁଳାଙ୍କୁର, ତାକୁ ଆଶୀର୍ବାଦ କର ମା !"

ବୁଢ଼ୀ କହିଲେ—"ଅହା ! ତୋର ବାପା, ସେ ପୁଅ ? କି କପାଳ ମୋର ! ତା ନହେଲେ ଏପରି ସୁନ୍ଦର, ଏପରି ସରଳ, କୋମଳ ବଚ୍ଚାକୁ ଆଉ କିଏ ହେବ ?"

ଶ୍ୟାମ ବାବୁ ମଣି ଯେତେ କଥା କହିଥିଲା ସବୁ କହିଗଲେ । ବୁଢ଼ୀ ଆଶ୍ଚର୍ଯ୍ୟ ହେଲେ ଯେ, ଏତେ ଅଳପ ସମୟ ଭିତରେ ସେ ସବୁ କଥା ଶୁଣି ଯାଇଚନ୍ତି ।

:

ଏଣେ ଗପ ସପ ହେଉ ଥାଏ, ତେଣେ ବୁଢ଼ୀ ଶ୍ୟାମବାବୁ ଶୋଇବା ପାଇଁ ଖଟ ସଜାଡୁ ଥାନ୍ତି । ଖଣ୍ଡିଏ କେଉଁ କାଳର ପୋତଡ଼ା ଖଟ ଥିଲା, "ସେ ତାକୁ ଦଉଡ଼ି ବାନ୍ଧି ଠିକଣା କରୁଥାନ୍ତି । ଶ୍ୟାମବାବୁ ପଚାରିଲେ— ମା, ଏଇଟା କଣ କରିବ ?"

"ବାବା, ତୁ ଆଜ କେଉଁଠି ଶୋଇବୁ ? ଘରଦ୍ୱାର ତ ସୁରୁଆଙ୍କ ହାତରୁ ଯାଇଛି—ଅମର ସବୁଦିନର ଅଭ୍ୟାସ, ଶୋଇ ପଡ଼ନ୍ତି, ଆଉ ତୁ ତ ତଳେ ଶୋଇ ପାରିବୁ ନାହିଁ । ଏହା ଛାଡ଼ିବ ନାହିଁ ଯେ—ମୁଁ ଦଉଡ଼ି ଛିଅର କରୁ ।"

"ମା, ବାଘୁଣୀ ହେଲ, ମୁଁ କଣ ଏତେ ଦେବତା ? ଦଶ ବର୍ଷର ସୁକୋମଳ ଶିଶୁ ଶୋଉଛି ଓଦାରେ, ଭୂଇଁରେ, ମୁଁ ଶୋଇବି ଖଟରେ ? ୮୦ ବର୍ଷର ବୁଢ଼ା ଶୋଇବେ ବରଷା ପାଣିରେ—ମୁଁ ଶୋଇବି ଖଟରେ ? ନା ମା, ତା ହେବ ନାହିଁ । ସମସ୍ତେ ଭୂଇଁରେ ଶୋଇବା ।"

ବୁଢ଼ୀଙ୍କର ଜବାବ ଦେବାକୁ କିଛି ମାତ୍ର କଥା ଆସିଲା ନାହିଁ । ସେ ଭାତ ଦେଖିବାକୁ ଘରକୁ ଚାଲିଗଲେ ।

ବାପଝିଅ ଖାଇସାରି ହାତ ଧୋଇ ପକାଇଲେ । ଆଉ ପୁଣି ଯାଇ ତାଙ୍କ ଜାଗାରେ ବସି କଥାବାର୍ତ୍ତା ହେଲେ । ମଣି ତା ପିଲାଦିନର ଶହଶହ କଥା କହିଗଲା । ଶ୍ୟାମ ବାବୁ ସବୁ କାନ ଡେରି ଶୁଣିବାକୁ ଲାଗିଲେ ।

ଯଥା ସମୟରେ ଭାତ ବଢ଼ା ହେଲା । ବାପଝିଅ ବସିଲେ ଗୋଟିଏ ପତରରେ, ଆଉ ବୁଢ଼ୀ ବସିଲେ ଗୋଟିଏ ପତରରେ । ବୁଢ଼ୀ ବସୁ ନଥିଲେ, ମାତ୍ର ଶ୍ୟାମବାବୁ ବାଧ୍ୟ କରି ବସାଇଲେ । ତରକାରୀ ଭିତରେ ଶାଗ-ଖରଡ଼ା, କଦଳୀ ଭଜା, ଆଉ ସରବାର ବେସର । ଏହି ଗରିବର

ଖାଦ୍ୟ ଭିତରେ କି ମାଧୁରୀ ଥିଲା, ଯାହା ତାଙ୍କୁ ଆଶ୍ଚର୍ଯ୍ୟ କରିଦେଇ ଥିଲା । ଆଜି ପର୍ଯ୍ୟନ୍ତ ସେ ଏପରି ତୃପ୍ତିକର ଖାଦ୍ୟ କେଉଁଠି ଖାଇ ନଥିଲେ ।। ତାଙ୍କୁ ଅମୃତ ପ୍ରାପ୍ତ ମନେ ହେଲା । ଏପରି ତୃପ୍ତିକର ଖାଦ୍ୟ ତାଙ୍କର ସ୍ତ୍ରୀ ମଲ୍ଲିକାକୁ ସେ ଆଦୌ ଖାଇବାକୁ ପାଇ ନଥିଲେ ! ହେଲେ ସ୍ତ୍ରୀଙ୍କର ଖାଦ୍ୟ ତ ଅତି ଉଚ୍ଚ ଧରଣର; ମାତ୍ର ଏହି ଭଜା ଗୁଡ଼ଲର ଭାତ ଅନାମ୍ବଳ। ଶାଗର ଖରଡ଼ା, ଅଳ୍ପ କଦଳୀର ଭଜା ତାଙ୍କୁ ଯେ ପରମ ସନ୍ତୋଷ ଦେଇ ଥିଲା, ତାହା ଅପୂର୍ବ । ଏହି ଅନ୍ନ ମଧ୍ୟରେ ସେ ଯେପରି ସନ୍ତୋଷର ଜୀବନ୍ତ ମୂର୍ତ୍ତି ଅନୁଭବ କଲେ ଏବଂ କହିଲେ—"ମା, ଆଜି ତମେ ମତେ ଅମୃତ ଭୋଜନ ଦେଲ ?"

ବୁଢ଼ୀ ଲଜ୍ଜାରେ ମୁଣ୍ଡ ନୁଆଁଇ କହିଲେ—"ବାପ, ରୁ ରାଜ ରାଜେଶ୍ୱର ମୋ କୁଡ଼ିଆରେ ଅତିଥି । ତୋର ପାଦ ମୋ କୁଡ଼ିଆରେ ପଡ଼ିଲା, ଏ ମୋର କେତେ ଜନ୍ମର ତପସ୍ୟା !"

ଶ୍ୟାମ ବାବୁ ଏତିକି ବେଳେ ଭାବିଲେ—"ଅହା, ଗରିବ ଭିତରେ ପୁଣି ମାଧୁରୀ ନାହିଁ, ଗରିବ ଭିତରେ ପୁଣି ଦେବତା ନାହାନ୍ତି-ମହତ୍ତ୍ୱ ନାହିଁ କିଏ କହିଲା ? ବରଂ ଯଦି କେଉଁଠି ମହତ୍ତ୍ୱ, ଦେବତ୍ୱ, ମାଧୁରୀ ଅଛି, ତେବେ ଗରିବ ସମାଜରେ । ତାଙ୍କର ଧନୀ, ରାଜା ମହାରାଜା, ଯେମିତାପନ ଲୋକଙ୍କୁ କେଜାଣି କାହିଁକି ଘୃଣା ଆସିଲା । ଭାବିଲେ, "ହାୟ, ସେମାନେ ଯଦି ଏ ଗରିବ କୁଟୀର ଦେଖନ୍ତେ; ତେବେ ଜାଣନ୍ତେ କେଉଁଠି ସୁଖ—ଆନନ୍ଦ ଅଛି ? ସେଇଥିପାଇଁ ତାଙ୍କର ପ୍ରାଚୀନ ବୈଦିକ ଆର୍ଯ୍ୟ ମହର୍ଷିମାନେ ବଣରେ ଶାନ୍ତିରେ କୁଟୀର ପ୍ରସ୍ତୁତ କରି ରହୁଥିଲେ । ଆଜି ସେଦିନ କାହିଁ ? ହୃଦୟ ଯାଇଚି, ଅଛି କେବଳ ଛାୟା । ଯେତେଦିନ ଯାଏ ଏହି ଧନୀ ଦରିଦ୍ରର ବୈଷମ୍ୟ ସମାଜରେ

ପ୍ରଚାର ଥିବ—ଯେତେଦିନଯାଏ ଏହି ନରରାକ୍ଷସଦଳ ମାନବର—ମାନବତ୍ୱ ଦେବତ୍ୱ ହରଣ କରିବା ପାଇଁ ଖଡ୍ଗ ହସ୍ତରେ ଲୋଳଜିହ୍ୱା ବିସ୍ତାର କରି ରହିଥିବେ—ଯେତେ ଦିନ ଯାଏ ଏହି ପାଷଣ୍ଡ ବର୍ଗୀର ଉଗ୍ର ତରବାରି ସବଳ ଶାନ୍ତ ପ୍ରାଣୀକୁ ଛିନ୍ନ ଭିନ୍ନ କରୁଥିବ—ଯେତେଦିନ ଯାଏ ପୃଥିବୀ ପୃଷ୍ଠରୁ ରକ୍ତଲେଖା ନ ଲିଭିବ—ଧନୀ ଦରିଦ୍ର ସମାନ ନ ହେବେ—ରାଜା ପ୍ରଜା ଏକାସନାରେ ନ ବସିବେ—ସମ୍ରାଟ ସାମନ୍ତ ଏକ ସଙ୍ଗେ ଭୋଜନ ନ କରିବେ—ଚଣ୍ଡାଳ ବ୍ରାହ୍ମଣ ହାତ ଧରା ଧରି ନ ହେବେ, ସେତେଦିନ ଯାଏ ଏହି ଦେଶ—ଏହି ଜାତି ନିଷ୍ପ୍ରଭ ନିର୍ବଳ ଅନୁନ୍ନତ—ଦୁଃଖଗ୍ରସ୍ତ—ଥିବ—ଥିବ—ଥିବ। ଜଗତରେ ଗୋଟାଏ ଜାତି ଅଜ ଯାହା ଦେଖାଇ ଦେଇଛି ତାହା ଅନୁକରଣ କରିବାକୁ ମାନବର ମନ ଯଦି ପ୍ରବଳ ଆକାଙ୍କ୍ଷାରେ ଆକାଙ୍କ୍ଷିତ ନ ହୁଏ, ତେବେ ଉପାୟ କଣ ? ହାୟ ଭଗବାନ, କେବେ ଏ ଜାତିର ସେହି 'ବସୁଧୈବ କୁଟୁମ୍ବକଂ' ଗୀତ ରକ୍ଷା କରିବ ? ଉଚ୍ଚ ସ୍ୱରରେ ଗାଇବ 'ଦୁଷ୍ଟନ୍ତୁ ବନ୍ଦେ ଅସ୍ପୃଶ୍ୟ ପୂଜା ।"

ତାଙ୍କ ମନରେ ଆସିଲା ହେବ ହେବ—ବର୍ତ୍ତମାନ ଜାତିର—ସମାଜର—ଜଗତର ଉତ୍‌ଥାନ ଚିତ୍ର ତାଙ୍କ ଆଖି ଆଗରେ ଉଭାହି ଉଠିଲା। ପ୍ରାଣରେ କଳ୍ପନା ରାଜ୍ୟର ତରୁଣ ଅରୁଣ କିରଣର ସ୍ନିଗ୍ଧ ଜ୍ୟୋତିରେ ସେ ଉଜ୍ଜ୍ୱଳ ହୋଇ ଉଠିଲେ ।

\+ + + +

ସକାଳୁ ଉଠି ଦେଖିଲେ, ତାଙ୍କର ଲୁଗାପଟା ଗୁଡ଼ିକ ଶୁଖିଲା ଅବସ୍ଥାରେ ଯଥା ସ୍ଥାନରେ ସଜ୍ଜିତ ହୋଇ ରହିଅଛି । ବୃଦ୍ଧାଙ୍କର କାର୍ଯ୍ୟକୁ ଶତ ଧନ୍ୟବାଦ ଦେଇ ସେଗୁଡ଼ିକ ପିନ୍ଧି ଉଠେଯାଣି ବେଗରେ ଶ୍ୟାମବାବୁ

ଦାଣ୍ଡକୁ ବାହାରିଲେ । ପ୍ରଥମେ ନେତେକ ଲୋକ ସଙ୍ଗରେ ନେଇ ଅଜ୍ଞ ମଧ୍ୟ ମଣିକୁ ସଙ୍ଗରେ ନେଇ ମଣି ଖୋଜି ବାହାରିଲେ । ତୋଟାରେ ପଶି ଦେଖିଲେ ଧାପଟି ମରି ଯାଇଛି । ସାପ ମୁଣ୍ଡରୁ ମଣିଟି ଲୋକଙ୍କ ଦ୍ୱାରା ସଂଗ୍ରହ କରି ଗଛକୁ କାଟି ସାପଟାକୁ ବାହାର କରାଇ ସହରକୁ ପଠାଇ ଦେଲେ । ସ୍ୱର୍ଗଅଜେ ଦଣ୍ଡକେ ଇଥାଟା ସ୍ପଷ୍ଟ ହୋଇଗଲା । ମଣି ସଙ୍ଗେ ମଣି ଦେଜ ଫେରି ଆସିବା ପରେ ବୁଢା ସମସ୍ତ ରହସ୍ୟ ଜ୍ଞାତ ହେବା ପାଇଁ ଅନୁରୋଧ କଲେ । ତେଣୁ ସେ ଆନୁପୂର୍ବିକ ସମସ୍ତ ଘଟଣା କହି ସାରି ତାହା ଦୈନିକ କାଗଜକୁ ଲେଖି ଶୀଘ୍ର ଘୋଷଣା କରି ଦେଲେ ।

ଏଣେ ତାଙ୍କର ବଦାନ୍ୟର ସମସ୍ତ କାନରୁ କାନ ହୋଇଗଲା । ଗାଁରେ ହାଉ ଜାଉ ପଡ଼ିଗଲା ଯେ, କାଲି ଡ଼ିପୋଟି ସାହେବ ଗୋବର-ଗୋଟେଇ ଘରେ ଥିଲେ । ଅଜ ଗୋବରଗୋଟେଇ କହିବାକୁ କାହାର ସାହସ ହେଲା ନାହିଁ, ସମସ୍ତେ ଭାବିଲେ—"କେହି ଠିକଏ ଜାଣି ମାରିନେଲେ ନାହିଁ—ତା ଘରୁଟାରେ ବାବୁ ରହି ଗଲେ ।" ମାଜି ବାବୁ ଭଲେ ମାଜ କାହାକୁ ସ୍ପୃହିଲେ ନାହିଁ । ଏଥର ବୁଢାଙ୍କୁ ବଦାନ୍ୟ ମାଗିଲେ ଏବଂ ମଣି ହାତରେ ପକେଟ ବ୍ୟାଗରୁ ୧୦୦ ଟଙ୍କାର ନୋଟ ଖଣ୍ଡିଏ ବାହାର କରିଦେଇ କହିଲେ—"ମଣି ! ଏକୁ ଖର୍ଚ୍ଚ କରି ତୁମେ ସୁବିଧାରେ ଚଳ—ଅଉ ଘର ଦୁଆର ପ୍ରସ୍ତୁତର ଯେ କିଛି ଅସୁବିଧା ଅଛି, ତାହା, ମୁଁ ଖରେ ପୂରଣ କରି ଦେବି । ଏଥିରେ କୌଣସି ପ୍ରକାର ଦୁଃଖ ଭାବ ନାହିଁ ।"

ଆଜ୍ଞ ମଧ କହିଲେ—"ମା ! ମୁଁ ତୁମକୁ ଏହି ଟଙ୍କା ଦେଉ ନାହିଁ—ଏହା ତୁମର ପ୍ରାପ୍ୟ ! ସରୋଜ ଯେଉଁ ଦନୁଁ ତୁମର ଦୁଃଖ କାହାଣୀ ମୋ ଅଗରେ କହିଲାଣି, ହାୟ ସେ ଦନଠୁ ମୁଁ ଚେଷ୍ଟା କରିଥିଲେ ଏହି କନକ ପ୍ରତିମାଟି ଏପରି ନାରି ଖାରି ହୋଇ ନ ଥାନ୍ତା । ହେଉ ମୁଁ ଯାଉଛି ।

ବୁଢାଙ୍କ ଅଖିରୁ ଲୁହଧାର ଖସିଗଲା । ସେ ଆଉ କିଛି କହି ପାରିଲେ ନାହିଁ—କଣ କହିବାକୁ ଯାଉଥିଲେ ତାଙ୍କର ପାଟି ବନ୍ଦ ହୋଇଗଲା । ମଣି କେବଳ ପଚାରିଲା "ବାବା ! ତମେ ଆଉ କଣ ଆମ ଘରକୁ ଆସିବ ନାହିଁ ? ମତେ ଟିକିଏ ସରୋଜ ଭାଇକୁ ଦେଖାଇବ ନାହିଁ ?"

ତ୍ରିପାଠୀ ବାବୁ ତାଙ୍କୁ ଗୋଟିଏ ବିଦାୟ ଚୁମ୍ବନ ଦେଇ କହିଲେ, "ହଁମା ! ମୁଁ ପୁଣି ଆସିବି ଯେ । ସରୋଜ ଭାଇ ଛୁଟିରେ ଘରକୁ ଫେରିଲେ ସେ ମଧ୍ୟ ଆସିବ ।"

ବାଳିକା କିଛି କହିପାରିଲା ନାହିଁ—ଛଳ ଛଳ ହୋଇ ଚାହିଁ ରହିଲା । ଧୀରେ ଧୀରେ ପଛକୁ ଚାହିଁ ଚାହିଁ ଶ୍ୟାମବାବୁ ଅଦୃଶ୍ୟ ହେଲେ—ମଣିର ଇନ୍ଦୀବର ଡୋଳା ଦୁଇଟିର ଛଳ ଛଳ ଚାହାଣୀ, ଆଉ ବୁଢାଙ୍କର ଅଶ୍ରୁଭରା ମୁଖର ସ୍ମୃତି ଘେନି ।

ଏଣେ ମଣି ଆଉ ତାର ମା' ଘରକୁ ଯାଇ ଶ୍ୟାମ ବାବୁଙ୍କ କଥା କଥାବାର୍ତ୍ତା ହେଲେ ଏବଂ ଦିନ ଗଣିଲେ ପୁଣି କେବେ ଯେ ତାଙ୍କ ଅତିଥିଙ୍କୁ ଦେଖିବେ ?—



୨

ବୁଢ଼ୀମା ଆଉ ନାତୁଣୀ ସକାଳେ ଗାଧୋଇ ପାଟିଧୋଇ କାଲି ରାତିର ପଖାଳ ଗଣ୍ଡାକ ଖାଇ ଥିର ହୋଇ ବସିଛନ୍ତି, ଏହି ସମୟରେ ଡାକ ଖବର ବାଲା ଦୁଆରେ ଆସି ଡାକିଲା "ମଣି ! ମଣି ! ମଣି !—"

ବୁଢ଼ୀ ଦୁଆର ଫିଟାଇ ଡାକୁ ପାର୍ସଲ ଅତଡ଼ାଏ ନେଇ ଘରକୁ ଗଲେ । ମନରେ ଆନନ୍ଦ ହେଲେ, ଏହିକଣି କେତୋଟା ଦିନ ଖୁବ୍‌ଖୁସିରେ ମଣିଷ ଚଳି ଯିବ । ନୋଟଖଣ୍ଡ ଭଙ୍ଗେଇଲେ ଘର ଖଜଣାଟା ପଧାନକୁ ଦେଇ-

ଦେବ, ଅଉ ଦେଖିକର ତାକୁ ଭଙ୍ଗେଇ ନେବ । ଘଣ୍ଟିଖାଲ୍ଲା ଯାନ୍ତା ବସି ଥିଲା,ଟେପଡକ ନେଇ ବୁଢ଼ୀଙ୍କ ଠାଉ କଷ୍ଟ ପଇସା ଧରି, କାହ୍ନୁବାର ଅଣି ଦେବାକୁ ଚାଲିଗଲା ।

ସିଏ ଅଗରୁ ବୁଢ଼ୀ ପଗ୍ଭରଲେ—"ହଇରେ କାହ୍ନୁଆ ! ଛଣ୍ଡ୍ରେ ନୋଠ ଭଙ୍ଗେଇ ଦେଇ ପାରିବୁ ?"

କାହ୍ନୁଆ ହସିଦେଇ କହିଲା—"ମା'ଙ୍କଣ ସପନ ଦେଖୁଛୁ—ନୋଠ କୁଟୁ ପାଇଲ ?"

ବୁଢ଼ୀ ସବୁ କଥା କହିବାରୁ ସେ ଅନନ୍ଦ ହୋଇ କହିଲା—"ମା, ପ୍ରଭୁଙ୍କୁ ଡ଼ାକୁଥିଲ—ମତେ ଏହି ମଣିକି ଦେଖିଲେ ବଡ଼ କାନ୍ଦ ମାଡ଼େ—ଅହା, କେତେବଡ଼ ଲୋକ ଘର ଝିଅ କଣ ହେଇ ଗଲାନି ? ପ୍ରଭୁ ତେବେ ଗରିବ ଗୁହାରି ବୁଝୁଛନ୍ତି ? ହଉ ମା, ମୁଁ ମାଷ୍ଟ୍ରୁଅଳଠୁ ବୁଝି କହିବ ।"

ସେ ଗ୍ଭଲିଗଲା । ବୁଢ଼ୀ ଘର ଭିତରକୁ ଆସି ଦେଖିଲେ, ମଣି ନିବିଷ୍ଟ ଚିତ୍ତରେ କାଳି କଲମ କାଗଜ ଧରି କବିତା ଯୋଡ଼ୁଚି । ସେ ବେଳ ପାଇଲେ ଏପରି କେତେ କବିତା ଲେଖେ । ଅଳ ତାର ବାଡାମାନେ ସେ ଗୀତ ତିଆରି କରୁଚି । ତାଙ୍କର ମନ ବଡ଼ ଆନନ୍ଦ ହେଲା । ସେ ମଧ୍ୟ ପାଖରେ ବସି ତାକୁ ସାହାଯ୍ୟ କଲେ । ଗୀତଟି ତିଆରି ସରିବା ପରେ ମଣି ତାର ସ୍ୱଭାବସୁଲଭ ମଧୁର କଣ୍ଠରେ ଗାଇଲା—

"ଗୁଣବନ୍ତ ହେ ତୁମେ ଆମ ବାଇଜେ
ଗରିବ ଦୁଆରକୁ ଆସିଇ ଯେବେ । ୧
କି ଦେଇଣ କରିବୁ ତମର ପୂଜା
ଆମ ଘରେ ତ ନାହିଁ ମୁଠିଏ ଭୁଜା । ୨

ରଙ୍କାଙ୍କ ତମେ, ଅମେ ଦୁଃଖିନୀ ଲୋକ
ପାଦ ପଡ଼ିଲା ଘରେ ହେଲୁ ସାର୍ଥକ । ୩

ଖାଇଲ ଖୁଦକୁଣ୍ଡା ନକର ଘୃଣା
ଶୋଇଲ ଛିଣ୍ଡାକନା କର ବଛଣା— । ୪

ଓଦା କାଦୁଏ ପ୍ରଭୁ କାଟିଲ ବାଟ
ଧନ୍ୟ ଧନ୍ୟ ହେ, ତମେ ଉଦାରମନ । ୫

କୃତାର୍ଥ ହେଲୁ ଅମେ ହେଲା ସଫଳ—
ଅମ ମଣିଷଜନ୍ମ ଶ୍ୟାମସୁନ୍ଦର । ୬

ବିଦୁର ଘରେ କଲ ଯେ ଶାଗଭୋଜ
ମନେ ରହିଚ ଅମ ସେ କଥା ଜାଗି । ୭

ଧନଦଉଲତ ଦେଲ ହେଲୁଁ ହେ ସୁଖୀ
ନମସ୍କାର ତୁମକୁ ମୁଁ ଜରମାଖି । ୮

“ଅଠ ପଦଟା ଠିକ୍ ହେଲା ନାହିଁ ମା, ଅଉ ଦିପଦ ସେଥିରେ ମିଶାଇ ଦେ—ଦଶପଦ ହେଇଯାଉ । ଲେଖ, ମୁଁ ଡାକି ଦଉଚି”—ମଣି ଲେଖିଲା—

ମାଆ ବୁଢ଼ୀ କରଇ ସୁକଇଲାଣି
ଦୁଃଖୀଙ୍କୁ ଦେଖ ତୁମେ ଏପର ଜାଣି । ୯

ମନେ ରଖିବ ବାବା ସବେଳ ଭଇ
ବନମାଳେଇ ନା ଗୁଣ ଦେବେ ବଢ଼ାଇ । ୧୦ ”

ବୁଢ଼ୀ ମାଆର ଗୀତ ଦିପଦ ମଣିମାନଙ୍କୁ ଖୁବ୍ ପାଇଲା । ପଢେ ସେ ତା ଗୀତରେ ବୁଢ଼ୀ ମା’ଙ୍କ କଥା ‘ଅଉ ସବେଳ ଭଳି କଥା ଛଡ଼ା ଯାଉ

ଥିଲା । ଏଥର ସେ ଗୀତଟିକୁ ଖଣ୍ଡିଏ ଧଳା କାଗଜରେ ଉତାରି ତଳେ ତାର ନାମ ଲେଖିଦେଲା—

ତମର ଟେଉଚ ଝିଅ
ଶ୍ରୀମତୀ କେମାମଣି

ତା ମନ ହେଲା ଏହିକ୍ଷଣି ସେ ଗୀତଟିକୁ ବାବା ପାଖକୁ ପଠେଇ ଦିଅନ୍ତା—ମାତ୍ର ସେପରି ସୁବିଧା କାହିଁ ? ବୁଢ଼ୀମା କହିଲେ—"ଆଜି ମା ଯେଉଁ ଦିନ ବାବା ଆସିବେ ସେଇ ଦିନ ତାଙ୍କୁ ଦେଇଛ ରଖିଥା,ଦେବୁ!।"

\+ + + + +

ଦିନ ଦିନ ହୋଇ ଏହାମଧ୍ୟରେ କେତେ ଦିନ ଗତ ହୋଇଗଲା । ଦିନେ ବଡ଼ ପାହାନ୍ତିଆରେ ଶୁଭିଲା "ଗ୍ରୃର—ଗ୍ରୃଁର—ଗ୍ରୃର ।" ଗାଁ ତମାମ୍ ଦଣ୍ଡକେ ଜମା ହୋଇଗଲେ । ହୋହା—ଘୋଡ଼ା ପାଟିରେ ଗାଁ ଖଣ୍ଡ ଉଛୁଳି ପଡ଼ିଲା । ଧରଧର—ମାର ମାର—ହେଇଟି ହେଇଟି—ଗଲା ଗଲା ବୋଲି ଲୋକସବୁ ଏପାଖ ସେପାଖ ହୋଇ ବୁଲିବାକୁ ଲାଗିଲେ; ମାତ୍ର ଗ୍ରୃର ଧରା ପଡ଼ିଲା ନାହିଁ । ଦୁଆରେ ଅଳ୍ପ ଥୋଇ ପଞ୍ଚା ପଞ୍ଚା ଲୋକ ତାର ବ୍ରହ୍ମାଣ୍ଡର କଥା ଚାଉଳ ହେଲେ । କିଏ କହିଲା—"ଦେଖିଥାନ୍ତୁ, ସେତେବେ; ଅଜ-ମୁହୂର୍ତ୍ତେ ଅଗରୁ ନଦଣ୍ଠା ଭାଙ୍ଗି ଯାଇ ଥାନ୍ତା, ତେବେ ଗ୍ରୃର ନା ଗ୍ରୃରଚାପ ଶ୍ୟାମ ଚାଟ ହାବୁଡ଼ରୁ ଯାଇଥାନ୍ତା ? ଆଉଜଣେ କହିଲା—"ଅରେ ଯା—ହାବୁଡ଼େ ହୋଇଥିଲେ ଗୋଡ଼ ଦଣ୍ଠା ମୁହଁ ଭାଙ୍ଗି ଦେଇ ନଥାନ୍ତି ? ସେଇ ବାଡ଼ି ବଣଠାରେ ତ ଖପ ଖପ ହୋଇ ପଳେଇଲା । ଭୁହ ଖଣିଠାକୁ ଧାଇଁ ମଣିଷ କିଏ ଧରୁଛ ?" ଅନ୍ୟ ଜଣେ କହିଲା, "ଶଶିଅ ଥାନ୍ତାକ ଦେଖିଥାନ୍ତୁ—ଘରେ ନିଆଁ ଲଗାଇ ଦେଇ ସେତେବେ ସେହି ଅଳ୍ପଅରେ ଗ୍ରୃରକୁ ବାନ୍ଧି ଦେଇ ନଥାନ୍ତା ?"

ଏପରି କିଏ କେତେ କଥାବାର୍ତ୍ତା ହେଲେ । ସକାଳୁ ପ୍ରଧାନଙ୍କ ଘର ଚୋରି ଖାଲକା କାହାର ପଡ଼ିଲା । ହଜିଗଲେ ଜିନିଷର ଦାମ ଜଣା ପଡ଼େ । ସେ ମିଛି ସତ ଯୋଡ଼ି ୩୦୦୦ ଟଙ୍କାର ପଦାର୍ଥ ଚୋରିଯାଇଛି ବୋଲି ବାହାରେ ପ୍ରଚାର କଲେ । ଟ୍ରଙ୍କ ପେଟରି କଟା ଯାଇ ନାହିଁ—ଯାଇଛି ଖାଲି ଭିତରୁ ମାଲ । ସେଥିଁ ସେଥିଁ ଗଣ୍ଡା ଗଣ୍ଡା ମାମଲତକାର ବାହାରି ପଡ଼ିଲେ—ପୋଲିସ ଏତଲା ହେଲା—କନଷ୍ଟବଲ ଆସି ଅନୁସନ୍ଧାନରେ ଲାଗିଗଲା ଏବଂ ସଦରକୁ ଖବର ପଠେଇ ଦେଲା । ଦିନ ୧୦ଟା ବେଳେ ଦାରୋଗା ବାବୁ ଆସି ହାଜର ହୋଇଗଲେ । ସେ ପ୍ରଶ୍ନ ଉପରେ ପ୍ରଶ୍ନ—ପ୍ରଶ୍ନ ଉପରେ ପ୍ରଶ୍ନ ପଚାରି ଇରୁକଥା ଲେଖି ନେଲେ । ବାଡ଼ିଘର ବୁଲବାଡ଼ି ସବୁ ପରୀକ୍ଷା କରି ଫେରିଗଲେ । ପ୍ରଧାନଙ୍କର ଖଜଣା ଟଙ୍କାରଖା ଗୁଣ୍ଡୁଚି ଚୋରି ହେବାରୁ ସେ ବରକ୍ତରେ ସେହିଦିନ ବାକି ଥିବା ଖଜଣାବାଲଙ୍କ ଦୁଆରେ ପାଣ ପଠାଣ ପିଅଦା ଲଗେଇ ଦେଲେ । ପିଅଦାମାନେ ଅଭଦ୍ରା ଭାଷାରେ ଗାଳିଦେଇ ଲୋକଙ୍କୁ ଅଥୟ କରି ପକାଇଲେ ।

ମଣିଦର ଗାଁର ଏକପାଖରେ ହେଲେ ସୁଦ୍ଧା ସେମାନେ ଚୋରି କଥା ଶୁଣି ବଡ଼ ଦୁଃଖ କରିଥିଲେ । ପ୍ରଧାନ ଘରଟି ତାଙ୍କ ଗାଁରେ ମଉଡ଼ମଣି ଥିଲା । ସେ କାହାକୁ ଉପକାର କରୁ କି ନ କରୁ, ଗୁଡ଼ାଏ ଧନ ଦଉଲତ ରଖି ରହିଥିଲା । ଏତେବଡ଼ କୁଠ ମୁଠା —କାହାର ଚଳିବେ ବୋଲି ବୁଢ଼ୀ କେତେ ଭାବିଲେ । ମାଏ ତାଙ୍କର ଜମିବାଡ଼ି ସବୁ ଷଡ଼ଯନ୍ତ୍ର କରି ହାତକୁ ନେଇ ଯାଇଚି ବୋଲି ତାଙ୍କର ତିଳେ ହିଂସା ହେଲା ନାହିଁ ।

ତାଙ୍କର ବି ଖଜଣା ବାକି ଥିଲା । ସେଥିପାଇଁ ଦୁଆରେ ଯେତେବେଳେ ପିଅଦା ଡକା ଛାଡ଼ିଲା, ବୁଢ଼ୀ ଚମକି ପଡ଼ିଲେ । ଅନ୍ତରଙ୍ଗରେ

ସେହି ବଲଡା କନାରେ ଗୁଡ଼ା ହୋଇଥିବା ନୋଟ ଖଣ୍ଡିକୁ ମଣି ହାତରେ ଦେଇ ପ୍ରଧାନ ପାଖକୁ ପଠାଇ ଦେଲେ । ମଣିକୁ କହିଲେ— "ମା, ଏକୁ ନବୁ କ—ଦନେଇ ବାପାକୁ ଦେଇ କହିବୁ ଏଇଥିରୁ ୧ ବର୍ଷର ଖଜଣା ଅଁନଅ କାଟିରଖି ବାକିତକ ଟଙ୍କା ଦେବେ ।

ମଣି ଚାଲିଗଲା । ପିଅଦା ତାର ଘୁଷିପଇଦାଟି ଧରି ଅଲଗା ଜାଗାକୁ ଗଲା । ମଣିକୁ ମା' ଯେମିତି କହିଥିଲେ ସେ ସେହିପରି କହି ନୋଟଟି ପ୍ରଧାନଙ୍କୁ ଦେଲା । ନୋଟଟି ଦେଖି ପ୍ରଧାନଙ୍କର ପିତ୍ତେଇ ଜଳିଗଲା । ପାଖରେ ଥିବା କେତୋଟା ଅପୂଲ ବଦଖୋର ଲୋକ ମୁଣ୍ଡ କହଯାଦେଇ କହିଲେ—"ଦେଖ ! ଧାର୍ମିକ ମାଲ—ସେ କେବେ ଲୁଚବ ନାହିଁ । ଦଣ୍ଡକେ ଧରାପଡ଼ି ଗଲା ।"

ପ୍ରଧାନେ ପଚାରିଲେ—"କାଲେ ଗୋବରଗୋଟରେ ଏ କଣ ?" ଆଉ କିଛି କହିଲେ ନାହିଁ । ଦଶବର୍ଷର ଝିଅଟିକୁ ବଳତ୍କାରରେ ଧରିନେଇ ଆଉ ଦୁଇଜଣ ଲୋକ ବଙ୍କିମ ଗଞ୍ଜ ଥାନାକୁ ନେଇଗଲେ । ଏବଂ ବାଟରେ କଥାବାର୍ତ୍ତା ହେଲେ—"ବୁଝିଲ ଭାଇ ! ପ୍ରଭୁଙ୍କୁ ଯେ ଡାକିବ ପୁଣି ପାର ଚୋରି ପଦାର୍ଥ ହୋଇଥିବ ସେ ଲୁଚବ ନାହିଁ ମ ? ମୋର ୧୨ ପ୍ରାଣୀ କୁଟୁମ୍ବର ହଣ୍ଡାପ—ଥିଂ—କୁଅଡ଼େ । ହେଇ ଦେଖ—ଅବେର କାଲି ରାତିଟକୁ ଏହି ଖଣ୍ଡିକ ଦେଇ ଚାଲିଗଲେ—ବାଣ୍ଡରେ ଚୋର—ପକାକ୍ରୁ ପଡ଼ିଲ ଧରା । ଆଉ କଣ ଏଙ୍କୁ ଦୟାଧର୍ମ କରିବ କହିଲ ? ସେପରି ବଦ୍‌ଗୁଣ ଅଛି ବୋଲି ଏଙ୍କ ଦଶା ଏପରି କି ? ମଣି କିଛି ବୁଝିପାରିଲା ନାହିଁ ପ୍ରଧାନଙ୍କ କଥାରୁ ସେ ଜାଣିପାରିଲା ତାକୁ ଚୋରବୋଲି କୁଆଡ଼େ ନଉଛନ୍ତି—ବାଳିକା କାନ୍ଦି ପକେଇଲା । ମାଏ ତାର ଗୃହ କଣ ପାଟି-ଫିଟେଇବାକୁ ? ସେ ଜନହେଁ ଯେଉଁବାଟେ ଯିବାକୁ ଯାହା କରିବାକୁ

କହିଲେ ତାହା କଲା । ବାନ୍ଧିଯାଉ ତାକୁ ଯେ ଧମକା ଚମକା ପ୍ରଧାନେ କଲେ ତାହା କେଶିନା ଅଗରେ କାନ୍ଦମାଡ଼େ ! ତାକୁ ତଥା ଗୋଇଠା ଦେବାକୁ କାନ ମୋଡ଼ ପୃଥୁଡ଼ା ଦେବାକୁ ସେ କେବେ ନିରସ୍ତ ହେଲେ ନାହିଁ ।

ଏଣେ ଗାଁରେ କଥାଟା ସ୍ପଷ୍ଟହେବାକୁ ଆଉ ବିଳମ୍ବ ହେଲାନାହିଁ । ପଞ୍ଚା ପଞ୍ଚା ଲୋକ ଆସି ବୁଢ଼ୀଙ୍କ ଘରେ ଠେକା ପଥର ବୃଷ୍ଟି କଲେ ଏବଂ ବାର ଅଭାଷାରେ ଗାଳିଦେଇ କହିଲେ—"ରହ ରହ—ଅଳ ତୋ ଗୁଣ ଛୁଡ଼ାଉଛୁ ।" କେହି ବା କହିଲା "ଏ ବୃଦ୍ଧିଟାକୁ ଦାଣ୍ଡରୁ ଝିଙ୍କି ଆଣ ହେ ?" ବୁଢ଼ୀଙ୍କର ଦେହ ଭାଙ୍ଗିପଡ଼ିଲା । ସେ ଲୋକଙ୍କ କଥାରୁ ଜାଣିଲେ ଯେ ସେ ସ୍ୱୈରିଣୀ ।

ହାୟରେ ବିଧାତା ଏ ଅଶୀତିପର ବୟସରେ ୧୦ ବର୍ଷର ଝିଅଟିକୁ ନେଇ କେଉଁଠିକି ସ୍ୱୈରିଣୀ ଯାଇଥିଲି ? ପ୍ରାଣ ! ଆଉ କେତେଦିନ ଅଛୁ ? କେତେକଥା ଆଉ ଦେଖାଇବୁ ? ଏ ପୋଡ଼ା ସଂସାରରେ ଜନ୍ମ ହୋଇ ଏତେଦଣ୍ଡ ଭୋଗିଲି ତେବେ ବି ତାହା ଶେଷ ହେଲା ନାହିଁ ।

ସେ କାନ୍ଦୁଛନ୍ତି—କିଏ ତାଙ୍କର ବାଡ଼ଦାଣ୍ଡ ଭାଙ୍ଗି ଦେଉଛି-କିଏ ତାଙ୍କ କପାଗଛ ଗୁଡ଼ାକ ଉପାଡ଼ି ପକାଉଛି, କିଏ କଦଳୀଗଛ ଗୁଡ଼ାକ ଭାଙ୍ଗି ପକାଉଛି । ଏହି ସମୟରେ ଗାଁର କୁଳବୃଦ୍ଧ ଧୋବେଇ ନାଏକ ଆସି କହିଲେ "ମଣିମା ! ଏ ବୃଦ୍ଧକାଳରେ ଏ କି କୀର୍ତ୍ତି ଅର୍ଜିଲ । କାହାକୁ ଶିଖାଇ ମଣେଇ ଏ କାମଟି କରେଇଛ ? ପୁଣି ଏ ଧନ ସମ୍ଭାଳି ପାରିଲ ନାହିଁ ! ଯା—କଣ କହିବା । ବଡ଼ଘର ବୋହୂ ହୋଇଥିଲ ବଡଲୋକର ମା' ହୋଇଥିଲ, ପ୍ରାଣ ରଖିବାକୁ ଏ ଅଶୀବରଷରେ ଏଇଆ କଲ ? ବିଷଖାଇ ମରିବାକୁ କଣ କିଛି ଉପାୟ ମିଳିଲା ନାହିଁ ? କଷ୍ଟ ଥିଲେ କେତେକଥା

ଦେଖିବା—କହୁ କହୁ ସେ ଛୁ—ଛୁ ହୋଇ ଚାଲିଗଲେ । ଗୋଟିଏ କାନ୍ଥକୁ ଅନେକ ଛୁଟୀ କାଟିଫିରୁଥିବାପରି ରହିଗଲେ । ତାହାଙ୍କୁ ପାଟି-ଫିଟାଇ କଥାପଦେ ପୁଛା କରିପାରିଲେ ନାହିଁ ।

ହାୟ, ଗରିବର ସବୁଠାରେ ବିପଦ—ଗରିବ ସବୁଠାରେ ହେୟ । ଯାଉଁ ଯେ ଉପୋଷିବାକୁ ବେଦନ ଅଇଲେ—କିଏ ତାଙ୍କୁ ମରୁଥିଲା—ସେ ମୂର୍ତ୍ତିଙ୍କୁ ଦେଇଗଲେ—ଆହା ନିର୍ବଳ ଦୁଇଟି ପ୍ରାଣୀ କି ବିପଦରେ ପଡ଼ିଲେଣି ? କେହି ଶୁଣିଲା ନାହିଁ—କେହି ବୁଝିଲା ନାହିଁ ।

× × × ×

ଦଶଟାବେଳେ ପୋଲିସ ଆସି କିଛି ବିଚାର ନ କରି ହାତକଡ଼ି ଦେଇ ବୁଢ଼ୀଙ୍କୁ ବାନ୍ଧେ ବାନ୍ଧେ ଯେମିତି ଚାଲିଗଲା । ସେ କେବଳ ପ୍ରଭୁଙ୍କୁ ଡାକୁଥିଲେ "ପ୍ରଭୁ ! ଆଉ କଣ ଏ ଦୁଃଖିନୀର ମୃତ୍ୟୁ ନାହିଁ ?"

ପୃଥିବୀ ତମକୁ କଣ ଲଜ୍ଜା ଅଇଲା ନାହିଁ, ତମେ ସହୁଛ କିପରି ? ସୀତାଙ୍କର ଅପମାନରେ ପରା ତୁମେ ଦଦନ ଫାଟି ଯାଇଥିଲ ?, ଆଜି ଫାଟି ଯାଉନାହିଁ । ଯେଉଁ ବୁଢ଼ୀନାରୀ ତାର ୮୦ ବର୍ଷର ଦୁଃଖମୟ ଜୀବନମଧ୍ୟରେ କେବେ ଘରାକର ବାଣ୍ଡ ଦେଖି ନ ଥିଲା ତାକୁ ଆଜି ବନାଦ୍ୱୋସ୍ତରେ ଏପରି ଦଣ୍ଡିତ ହେବାର ଦେଖି ତମକୁ ଦୁଃଖ ଅସୁନାହିଁ ? ବଜ୍ର, ତାଙ୍କ ଉପରେ ପଡ଼ିବାକୁ—ଆକାଶ ତାଙ୍କ ମୁଣ୍ଡରେ ଭାଙ୍ଗି ପଡ଼ିବାକୁ ସେ ପ୍ରଭୁଙ୍କୁ କେତେ ଅନୁନୟ ବିନୟ କଲେ—ମାତ୍ର ତାହା ହେଲା ନାହିଁ । ଯାହାକୁ ଦେବୀ ବୋଲି ହଜାର ହଜାର ଲୋକ ଦାଣ୍ଡଦାଣ୍ଡ ପୂରି ଦେଖିବେ ସେ ମରିବ କିପରି ?

ଏଥର ଥାନା ଭୁଇଁରେ ଧଡ଼କ ଚମକ ଆରମ୍ଭ ହେଲା । ସେଇ ଡେପୁଟି ବାବୁଙ୍କଠୁ ଯେ ଠକା ପାଇଚନ୍ତି, ଏହାଛଡ଼ା ଆଉ କିଛି ମାନି କଲେ ନାହିଁ । ସେ ଦିନଠାରୁ ଉପାସରେ ମା'ଝିଅ ରହି ... । ଦେହକୁ ସହରକୁ ଦୁହେଁ ଚାଲାଣ ହେଲେ । ବାଟରେ କେତେଥର ବୁଢ଼ୀ ପଡ଼ିଗଲେ—ମରିଛି ଦେହରେ ପ୍ରାଣ ନ ଥିଲା । ଭଗମାଇଲ ବାଟ କେମିତି ଯିବେ ? ହିନ୍ଦୁସ୍ଥାନୀ ଗୋଲାପଟି ଦଫାଦାର ଓଡ଼ିଆ ପୋଲିସ ହିନ୍ଦୀ ଝଙ୍କଡ଼ା କରି ଏହି ବୁଢ଼ୀଙ୍କୁ କିଛି ଜଳଖିଆ ଦିଆଇବାର ବନ୍ଦୋବସ୍ତ କଲା । ମାତ୍ର ସେହି ଅନୁନୟ ବିନୟରେ ମଣି ଦି'ମୁଠା ହବି ଖାଇଲା, ମାତ୍ର ବୁଢ଼ୀ ଜଳ ସ୍ପର୍ଶ କଲେ ନାହିଁ ।

ବଡ଼ ଥାନାରେ ହାଜତରେ ବୁଢ଼ୀଙ୍କୁ ରଖି ଦିଆଗଲା ଏବଂ ତାଙ୍କୁ ଧମକ ଦେଇ ପଚାରିଲେ ଯେ, କେଉଁ ଚୋରମାନେ ତାଙ୍କ ସଙ୍ଗରେ ଅଛନ୍ତି । ମାତ୍ର ସେହି ଡେପୋଟି ବାବୁ କଥାଟି ଛଡ଼ା ଆଉ ଦ୍ୱିତୀୟ କଥା ତାଙ୍କଠୁ ବାହାରିଲା ନାହିଁ । ଏଣେ ଗାଁରୁ ପ୍ରମାଣ ସବୁ ମିଳିଗଲା । ମୁଁ ଦେଇ ପକ୍ଷରେ କେତେ ଯେ ସାକ୍ଷୀ ଆସି ହାଜର ହୋଇଗଲେ ତାର ସୀମା ନାହିଁ । ଏଣେ ସମସ୍ତେ ବୁଢ଼ୀ ଯେ ସେଠି ବହୁତ ଥର ଶୁଣି ଜଣେ ଧରି ପଡ଼ିଲେ, ତାହା କହିବାକୁ ଭୁଲିଲେ ନାହିଁ । ଦିନ ଦିନ ହୋଇ ଭୁଲ ଦିନ ... । ବୁଢ଼ୀ ଜଳସ୍ପର୍ଶ କଲେ ନାହିଁ । ମଣିଟି କେବେ କମିତ ମୁଠାଏ ଗୁଣ୍ଡା ... ଆଉ କିଛି ଖାଇଲା ନାହିଁ । ଏଣେ ଥାନାରେ କାଗଜପତ୍ର ସାଙ୍ଗରେ ହୋଇ ମାଜିଷ୍ଟ୍ରେଟ୍ କୋର୍ଟ୍‌କୁ ପଠା ହେବାର ସ୍ଥିର ହେଲା ।

ଡେପୋଟି ଶ୍ୟାମବାବୁ ଆଜକୁ ପାଞ୍ଚଦିନ ହେଲା ଗସ୍ତରେ ଯାଇ ଥିଲେ । ଯେଉଁ ଦିନ ବଡ଼ ସାହେବଙ୍କ ପାଖରେ ମୋକଦ୍ଦମା ବିଚାର ହେବାର କଥା, ସେହି ଦିନ ସେ ମାଜିଷ୍ଟ୍ରେଟ ସାହେବଙ୍କୁ ଫେରିବା ... ଧାଇଁ ...

କରିବାକୁ ଯାଇ ଏହି ଆଦେଶ ପାଇଲେ ଯେ, ଗୋଟାଏ ଗ୍ରେଡ଼ ବେଶି ତାଙ୍କୁ ଦୁଇଟିକାକୁ ଦେବ ।

\+ + + +

ଟାଙ୍କି କୋଠରୀରେ ମୁଦେଇ ମୁଦାଲିଙ୍କୁ ଦେଖି ତାଙ୍କର ହୃଦୟ ଯାହା ହେଲା ସେ ଜାଣନ୍ତି । ମୁଦାଲି ଦୁଇଟିଙ୍କ ଦେଖିବା ପୂର୍ବରୁ ସେ ପ୍ରଟେକ୍ଟ ପୋଲିଶରେ କାଗଜପତ୍ର ଭଲ ରକମ ଇନକ୍ୱାରୀ କରି ସମସ୍ତ ବିଷୟ ବୁଝି ଆକାଶକୁ ଚାହିଁଲେ । ଆଖିରୁ ଲୁହଧାର ବୋହିବାକୁ ମନ କରୁଥିଲା, ମାତ୍ର ସେ କେଳି ତଳେ ତାହା ଚପାଇ ଦେଇ ମନେମନେ କହିଲେ, “ପ୍ରଭୁ ! ତମର ଏ କି ଲୀଳା ?”

ଏଥର ତାଙ୍କର ହୃଦୟ ବିରକ୍ତିରେ ଜ୍ୱଳି ଉଠିଲା । ତାଙ୍କର ରକ୍ତ-ଚକ୍ଷୁ ଦେଖି କର୍ମଚାରୀମାନେ ନିଜର ବିପଦ ଆଶଙ୍କା କଲେ । ପଖା ବାଲ୍ଟି ଉପରେ ଭିଡ଼ିକରି ଘୋ ଠାଣିଲା । ଚପରାଶି ନିଦ୍ରାଟିର ଗୁହ୍ଁ ନହେଲା । ଟେପାକାର ବାବୁ ହୁକୁମକୁ ଅପେକ୍ଷା କରି ରହିଲେ । ମୁନସି-ଖାନାରେ ଗୋଳମାଳ ବନ୍ଦ ହୋଇଗଲା । ଇଂଲିଶ ଅଫିସରେ ସମସ୍ତେ ଠୁପ୍ ଠାପ୍ କଥାବାର୍ତ୍ତା ହେଲେ ।

ସଙ୍ଗେ ସଙ୍ଗେ ଅର୍ଡର୍ ହେଲା—ଗତ ମାସ ଅଫିସର ଦରମା ବିଲ ବହି—ଷ୍ଟେଟ ରେକର୍ଡ୍ ଆଣ ?

ଆଜ୍ଞା ପ୍ରମାଣେ ଖଜଣାଖାନା କର୍ମଚାରୀ ତାହା ଆଣି ଦେଇ ଫୁହାର କରି ପକାଇଲା ଏବଂ ଏଣେ ପିଅନକୁ ହୁକୁମ ହେଲା “ବୋଲାଓ ଗୋଲିନ୍ଦ ସବ୍ ଇନସ୍ପେକ୍ଟର” ପିଅନ “ଜୀ ହଜୁର” କହି ଚାଲି ଗଲା । ଏକ ହେଲା ଅଫିସ ଏକବାର ନିସ୍ତବ୍ଧ । ଯେପରି କାହାର ପ୍ରାଣ ନାହିଁ ।

:

ଖାଞ୍ଜାଞ୍ଚିଙ୍କୁ ହୁକୁମ୍ ହେଲା—ଏ ନୋଟର ନମ୍ବର ମିଳାଅ—କାହାର ଦରମାରେ ଯାଇଛି—କେଉଁ ମାସରେ କେଉଁ ତାରିଖ ? ଖାଞ୍ଜାଞ୍ଚି ହିସାବ ଦେଖାଇ ଦେଲା ଗତମାସ—ଦରମାରେ ହଜୁରଙ୍କ ବିଲରେ ଯାଇଛି ।

ହାକିମ 'ଅଚ୍ଛା' କହି ଚୁପ ହେଲେ । ଏଥର ସବ୍‌ଇନ୍‌ସପେକ୍ଟରଙ୍କ ପାଳି । ସବ୍‌ଇନ୍‌ସପେକ୍ଟର ବାବୁ କର୍ଣ୍ଣେଇ ନିଶରେ ହାତ ମାରି ମାରି ଚହଁ ଯାଇ ଏପରି ଗୋଟାଏ ଯୁହାର କଲେ ଯେ, ନୂଆଁ ଅଜ ମୁଣ୍ଡରେ ଲାଗିବାକୁ ଥିଲା କି ନାହିଁ ଜାଣି ହେଲା ନାହିଁ; କାରଣ ସେ ତାଙ୍କ ବୋତଲ ମୁଣ୍ଡକୁ ଝୁଙ୍କି ଉଠାଇ ପକାଇଲେ । ଧନ୍ୟ ତାଙ୍କର କାଯଦା । ଲୋକଙ୍କ ଆଗରେ ସିନା ସିଂହ ଭେକରେ ଫିଟି ଆସୁଥିଲେ, ମାତ୍ର ଖବର ପାଇବାର ହେଲା ପରେ ଛୁଟା ହେଲେ—ହାକିମଙ୍କ କ୍ରୋଧ କଟାକ୍ଷ ତାଙ୍କ ରକ୍ତ ପାଣି କରି ଦେଇଥିଲା ।

"ଏ ନୋଟ ଜମା କରି ଥିଲ ?"

"ହଜୁର—ଖିଦମତ !"

"ଏ ନୋଟ କାହାର ଜାଣିଲ ?"

"ତାହା ହରହର ଷ୍ଟେଟରସ୍ତୁ ଷ୍ଟୋର ଯିବାର ପୂର୍ବଦିନ ସନ୍ଧ୍ୟା ୭ ଘଣ୍ଟା ବେଳେ ଗାଁର ପଧାନ ବଡ଼ୁତ ପାଥ୍ରାରଙ୍କୁ ଦେଇ ଥିଲି ।"

"ଡାକ ହରହର ଷ୍ଟେଟରସ୍ତୁ" । ପିଅନ ଡାକ ଛାଡ଼ିଲା, "ହରହର ଷ୍ଟେଟରସ୍ତୁ ହାଜର ହୋ—ହରହର ଷ୍ଟେଟରସ୍ତୁ ହାଜର ହୋ !"

ଷ୍ଟେଟରସ୍ତୁ ପାଥ୍ରୁଅ ବେଶରେ ପାଚିଲା ଗାମୁଛି ପଞ୍ଜାବି ଖଣ୍ଡି ଉପରେ ପକେଇ ଆସି ହାଜର ହୋଇ ଗଲେ । ମୁହଁରେ ସିନ୍ଦୂର ସେରଟିଏ—

କାନରେ କାଠି ଖଣ୍ଡିଏ—ବୋଧହୁଏ ଦାନ୍ତ ଖୁଣ୍ଟିବା ପାଇଁ ନାଁ କଣ । ମୁଣ୍ଡବାଳ ଚନ୍ଦା, ଦେହରେ ଯାହା ଅଛି ତାହା ଶତ ବାକିଛର ସୁଶୃଙ୍ଖଳ ପକେଟରେ ପାନବଟାଟି ଦିଶି ଯାଉଚି—ଗୋଡରେ ଭଙ୍ଗାରପି ତଳ ଦାଗର ଯୁଡା ଭୁଲିଛି—ଆଉ ହାତରେ ସିଂହବାଡ଼ି ଖଣ୍ଡିଏ ।

"ଆପଣ ବରୁଣ ଦାଆନ୍ତରକୁ କେଉଁଦିନ ଟଙ୍କା ଦେଇଥିଲେ ?"

"ଟଙ୍କା ଦେଇଥିଲି କଣ ହଜୁର ! ମୋ ଉପରେ ଖଜଣା ଟଙ୍କା ଗୁଡାଏ ବାକିରେ ଥିଲା । ସେ ଦିନ, ଓହୋ ସେ ଶୁକ୍ର ଆଗଦିନ ହେବ କି ତା ପୂର୍ବଦିନ, ମୁଁ ଯାଇ ଥିଲି ତାଙ୍କ ପାଖକୁ । ଦେଖିଲି ଖଣ୍ଡେ ନୋଟ ତାଙ୍କ ପାଖେ ପଡ଼ିଚି । କହିଲି, ମତେ ଏଥିରୁ ଟିକିଏ କଷ୍ଟ ଭ ଦିଅ ପଧାନେ ! ତମକୁ ଏ ମଟିଖାଡ଼ିଆ ଜମିଖଣ୍ଡ ଲେଖି ଦଉଚି । ତାକୁ ଏହିକ୍ଷଣି ରଖ, ପରେ ତ କବାଲା ଦେଇ ଦେବି । ଏହା କହି ତାଙ୍କୁ ତମଦ୍ଧକ କରି ଦେଲି ; ଅଜ୍ଞ ପାଜଉ ଅଣିଲି । ସେ ଅଇଲା ବେଳେ ଡାକି କହିଲେ, 'ଏ ନୋଟ ଖଣ୍ଡ ଜାଣିକରି ତମେ ନେଲ, ପୁଣି ମୁତେଦେଲ, ମୁଁ ନୋଟ ବୋଲି ଦେଖିଚି, ମାତ୍ର କେତେ ଟଙ୍କାର ସେଟା, ତା ହିରୂପ କଣ, ଜାଣେ ନାହିଁ ହଜୁର !"

ଏହି ସମୟରେ ବରୁଣ ଦାଆନ୍ତରଙ୍କ ଆଗଭର କହିଲା—"ଦେଖି ନାହିଁ ଆଉ କଣ—ମିଛ ଗୁଡାଏ ଧର୍ମ ବଗୁର ପାଖରେ କହୁଚ କପରି ହେ ? ଅଜ ତାକୁ କହିବାକୁ ସରକାରୀ ପିଅନ ଅବସର ଦେଲା ନାହିଁ । ହାକିମଙ୍କର ପ୍ରିୟଭାଜନ ହେବାପାଇଁ କଡା ସ୍ୱରରେ କହି ଉଠିଲା "ଚୁପ୍ କର ଚୁପ୍ କର !"

ହାକିମ ସବ୍ ଇନ୍ସପେକ୍ଟରଙ୍କ ମୁହଁ ଚାହିଁ କହିଲେ —"ଏ ନୋଟରେ ୪ ଟି ଇ ଜାହାଜ ?"

ସବ୍‌ଇନ୍‌ସ୍‌ପେକ୍‌ଟର ବାବୁ ଥତମତ ଖାଇ ଗଲେ—ତାଙ୍କର ମୁହଁ ବଣା ହୋଇ ଗଲା । ରକ୍ତ ଆଖି ମଳିନ ହୋଇ ଗଲା—କିଛି ଅନ୍ୟ ଲାଗି ପଡ଼ିଲା । ଆଉ, ସେ କି ଏତେ କଥା ପରୀକ୍ଷା କରି ନାହାନ୍ତି । ସେ ତ ଦାରୋଗା ବାବୁ, ତାଙ୍କ ତଳେ କେତେ ଜମାଦାର । ସେ ଏଗୁଡ଼ାକ କାହିଁ ଦେଖନ୍ତେ ? ଆଉ କିଛି କହି ପାରିଲେ ନାହିଁ । ସ୍ଥିର ହୋଇ ଛିଡ଼ା ହେଲେ ।

ଏଥର ମାଜିଷ୍ଟ୍ରେଟଙ୍କର ରକ୍ତ ଚକ୍ଷୁ ବଦଳି ଗଲା—ସେ ଧୀରେ ଧୀରେ ମୁଦାଲାମାନଙ୍କୁ ଟିକିଏ ଚାହିଁ ବାଲକଟିକୁ ପଚାରିବାକୁ ପେସ୍କାରଙ୍କୁ କହିଲେ ଯେ—ତାକୁ ଗାଁର ଲୋକ ଏବଂ ପୋଲିସ କାହିଁକି ଦଣ୍ଡ ଦେଇଚ ? ଆଉ ତାର ମା' ବୁଢ଼ୀକୁ କପର ଦଣ୍ଡ ଦେଇଚ ? ସେ ବୁଝି କହୁ ।

ଚଉଦ ବର୍ଷର ବାଲକଟା ବହୁତ ବେଳୁ ଚାହିଁ ଥିଲା—ଏଇ ମୋର ପାଳି ହେବ ପରା ? ମାତ୍ର ଥରେ ମାଡ଼ ସେ ଦେଖିଚ, ସେଥିପାଇଁ ମନରେ ଭରସି ଠିକ୍ କରି ପାରୁ ନ ଥିଲା । ଦୋ ଦୋ ପାଞ୍ଚିଆ ହୋଇ ରହିଥିଲା । ଏଥର ପେସ୍କାରଙ୍କ ଧୀରସ୍ଥିର ବାଣୀରେ ତାର ମୁଖଦ୍ୱାର ଖୋଲିଲା । ଦୁଃଖ ତ ସେ ଜାଣେ, ଆଉ ତାର ବୁଢ଼ୀ ମା'ଠୁ ରାତିରେ ହାଜତରେ ଥିଲାବେଳେ ଗାଁର ଖବର, ତା' ବୁଢ଼ୀମା' ପ୍ରତି ଅତ୍ୟାଚାରର କଥା ସେ ଶୁଣିଥିଲା । ତେଣୁ କହିବାକୁ ମନ କଲା—ପୁଣି କହିବାକୁ ସାହସୀ ହେଲା ନାହିଁ । ମାଜିଷ୍ଟ୍ରେଟଙ୍କର ଅନୁମତିରେ ପେସ୍କାର ବାବୁ ବାଳକଟିକୁ ପାଖକୁ ନେଇ ସମସ୍ତ କଥା କହିବାକୁ ଅତି କୋମଳ ସ୍ୱରରେ କହିଲେ ।

ମଣି ଧୀରେ ଧୀରେ କାନ୍ଦି କାନ୍ଦି ସବୁ କଥା ଗୋଟିକରୁ ଜଣାଜଣାଏ କହିଗଲା । ଏହି ସମୟରେ କଟେଗା ତାହାର ପିଣ୍ଡାରେ କାନ୍ଦଣା ଶୁଭିଲା । ଗୋଟିଏ କାଏ ମଲିଆ ଲୋକ କାନ୍ଦି କାନ୍ଦି କୋର୍ଟ ଭିତରେ ପଶିଆସି ହେଲ

ସେ ରଡ଼ି ଛାଡ଼ି କାନ୍ଦିଲା— "ହଜୁର ! ହଜୁର ! ଦୁନିଆଁର ମା' ବାପ, ଗରିବର ଧର୍ମାବତାର ! ଓହୋ ! ଏହି ନାଗର ସରାଣୀଙ୍କୁ ଯେ ଦାଣ୍ଡ ଦେଖି ନଥିଲେ, ତାଙ୍କୁ ଆଣି କଚେରୀ ଦୁଆରେ କିଏ ଅଟକାଇଛି ? ମୋ ବୋପା ଲୋ, ମୁଁ ତ ଘରି ପାଇଁ ଯାଇ ଶୁଣିଲି ଯେ, ତାଙ୍କୁ ଦାରୁଗା ବାନ୍ଧି ନେଇଛି । ଏପରି ଗୀତ ଗାଇଲା ପରି କେତେ ବାହୁନିଲା । ତାକୁ ସ୍ଥିର ହୋଇ ଚୁପ୍ ରହିବାକୁ ହାକିମ ହୁକୁମ ଦେଲେ। ମାତ୍ର ତାର ସରଳ କୋମଳ କାହାଣୀରେ ଅଧି ଲୋକଙ୍କୁ କରି ଦେଲେ ।

ଛଅଟି ସପ୍ତାହ ପରେ ମାଜିଷ୍ଟ୍ରେଟ ସାହେବ, ବାଳକାକୁ ଆଉ ବୁଢ଼ାକୁ ଏବଂ ସେ ପତିବୁଢ଼ାକୁ ମଠରରେ ଦେଖି ଦୋଷକୁ ଖୁଲିଗଲେ । ଅଷ୍ଟ ଦିନ ଅନୁସନ୍ଧାନ ପରେ ହାକିମଙ୍କର ଆଦେଶ ବାହାରିଲା ।

'ପୋଲିସ ସବ୍ ଇନ୍ସପେକ୍ଟର ସସ୍ପେଣ୍ଡ ହୋଇଅଛନ୍ତି । ବୁଢ଼ା ଏବଂ ବାଳକାକୁ ଦଣ୍ଡ ଦେଇଥିବା ମୋଖତାର ଏବଂ ସଦର ପୁଲିସ ହେଡ୍ କନେଷ୍ଟବଲଙ୍କୁ ବରଖାସ୍ତ କରାଯାଇଛି । ଚୌକିଦାରକୁ ୬ ମାସ, ତା ସାଙ୍ଗରେ ଥାନାକୁ ଆସିଥିବା ଦୁଇଜଣଙ୍କୁ ଚାରି ଚାରି ମାସ ଏବଂ ବୁଢ଼ୀକୁ ଗାଁରେ ଅତ୍ୟାଚାର କରିଥିବା ଲୋକମାନଙ୍କୁ ଦୁଇ ଦୁଇ ମାସ, ବାଡ଼ି ଦେଇ ଆଣିଥିବା କନେଷ୍ଟବଲଙ୍କୁ ଦୁଇ ଦୁଇ ବର୍ଷ ଜେଲ୍ ହୋଇଅଛି । ସଦର ହେଡ୍. କନେଷ୍ଟବଲ ଇନ୍‌ଚାର୍ଜ୍ ସବ୍ ଇନସ୍‌ପେକ୍ଟର ହୋଇଅଛନ୍ତି ।

ମୁହୂର୍ତ୍ତକେ ଯଥା ଆଜ୍ଞା ପ୍ରତିପାଳିତ ହେଲା । ନୂଆ ସବ୍‌ଇନ୍‌ସ-ପେକ୍ଟର ବାବୁ ଜେଲ୍ ଭୋଗୀମାନଙ୍କ ହାତରେ ଗୋଡ଼ରେ ସବୁ ବେଡ଼ି ଦେଇ ଜେଲକୁ ପଠାଇ ଦେଲେ । ହାଁ କରି ଦେଇ ପାଖର ମୁହଁରେ କାନ୍ଦି କାନ୍ଦି ସବ୍ ଇନ୍‌ସପେକ୍ଟର ବାବୁ ଘରକୁ ଗଲେ । ତାଙ୍କ ମୁଣ୍ଡରେ

ତଳ୍ଡ ପଡ଼ିଥିଲେ ଆଜି ସେ ଯେପରି ଚମକି ପଡ଼ିଲେ ଏପରି ଚମକି ନଥାନ୍ତେ । ତାଙ୍କର ମନେ ହେଲା—"ହାୟରେ ଦୁନିଆ ! ଆଠ ପ୍ରାଣୀ କୁଟୁମ୍ବ, କିପରି ବଞ୍ଚିବେ ? ଠିକ ଏ ଭଲ କରି ଝଗଡ଼ା ଦେଖିଲି ନାହିଁ—ଅପର ଉପରେ ପକାଇ ଏ ଦଶା ହେଉଛି । ହାକିମ ଦୟାଳୁ । ଆଜି ଏହି ଭେଳ୍ମାଜିଷ୍ଟ୍ରେଟଙ୍କ କୋର୍ଟରେ ପଡ଼ିଥିଲେ ମୋର ଏତେବେଳକୁ ସବୁ ସରନ୍ତାଣି । ଆଜ ଡ଼ିସ୍‌ମିସ୍ ହେବାର କେତେ ଦୂର ଥିଲା । ଏ ହାକିମ୍ ଡ଼ିସ୍‌ମିସ୍ କରନାହାନ୍ତି । ସମ୍ଭବତଃ ଗରିବଙ୍କୁ ଜରିମାନାରେ ଖଲାସ ଦେବେ ପରା ? କିଣ ହେବ କେଜାଣି ? ମା ଗୋକୁଳେଶ୍ୱରୀ ଜାଣନ୍ତି ।"

ଏଣେ ସାଇ, ଦାଣ୍ଡ, ଘାଟ, ବାଟ, ସବୁଆଡ଼େ କଥାଟା ପ୍ରଚାର ହୋଇଗଲା । ସମସ୍ତେ ଶ୍ୟାମ ବାବୁଙ୍କୁ ଧନ୍ୟ ଧନ୍ୟ କଲେ । ଆଉ ଯେ ଦୁଃଖୀ ବିଚାରୀଙ୍କ କାହାଣୀ ଶୁଣି ଏପରି ଦୁଃଖ କଲେ ଯେ ସମସ୍ତଙ୍କ ଆଖିରୁ ଲୁହଧାରା ବୋହିଗଲା ।

ମକଦ୍ଦମା ରାୟ ହେବାର ବାଅଦିନ ସମସ୍ତେ ଦୈନିକ ଖବରକାଗଜ 'ନବୀନ'ରେ ଦେଖିଲେ ବଡ଼ବଡ଼ ଅକ୍ଷରରେ ୭ମ ପୃଷ୍ଠାରେ ଲେଖାଅଛି—

---

## ପୋଲିସର ଅନ୍ୟାୟ

ଭଦ୍ରମହିଳାର ଅପମାନ ଏବଂ ସାରା ଛଅ ଦିନ ଉପବାସ ନିର୍ଦ୍ଦୋଷ ଦଶ ବର୍ଷର ବାଳକ ଏବଂ ୮୦ ବର୍ଷର ବୃଦ୍ଧା ଉପରେ ପୋଲିସ କର୍ମଚାରୀ ଦଣ୍ଡାଘାତ ।

ମାନନୀୟ ଧର୍ମାବତାର ଡେପୁଟି ମାଜିଷ୍ଟ୍ରେଟଙ୍କ ଦ୍ୱାରା ସତ୍ୟ ଉଦ୍‌ଘାଟନ—ମୃତଦେହକୁ ମିଥ୍ୟା ପ୍ରତାରଣା ଯୋଗୁଁ ଏବଂ ଭଦ୍ରମହିଳାର ମହତ୍ତ୍ୱ ହାନି କରିବା ଯୋଗୁଁ ତାହାର କେତେକ ସଙ୍ଗୀ ସହିତ ଏବଂ ଜଣେ କନେଷ୍ଟବଲ୍ ସହିତ ସଶ୍ରମ କାରାବାସ, ଅନେକ ପୋଲିସଙ୍କର ଡ଼ିସ୍‌ମିସ୍ ଅର୍ଡର, ଆଉ ସବ୍ ଇନ୍‌ସ୍‌ପେକ୍ଟରଙ୍କର ସସପେଣ୍ଡ ଆଦେଶ

ତା' ଭିତରେ ପୁରା ଏକ ପୃଷ୍ଠାବ୍ୟାପୀ ବିଶେଷ ସ୍ତମ୍ଭ ସମାବେଶ । ପଢ଼ି ପଢ଼ି ଲୋକେ ପାଗଳ ହୋଇଗଲେ । ଯୋଉଦିନ ଖବରକାଗଜ ହକରଙ୍କ ଦ୍ୱାରା ଦଶହଜାର ପତ୍ରିକା ବିକ୍ରୟ ହେଲା ।

କିଛି ଦିନ ପରେ ମୁଣି ତାଙ୍କ 'ନବୀନ' ରେ ସ୍ୱୈର ଧରାପଡ଼ିଲେ ବୋଲି ଗୋଟିଏ ପ୍ରବନ୍ଧ ବାହାରିଲା । ଏଥିରେ ମାଜିଷ୍ଟ୍ରେଟଙ୍କ ପ୍ରତି ଟେଲ୍ ଟେଲି ଅପ୍ରକୃତ ସ୍ନେହ ଲୋକମାନଙ୍କର ଦେଖାଗଲା । ବଡ଼ ମାହେବ ସବ ଇନ୍ସପେକ୍ଟରଙ୍କୁ ଉପୋଠି ମାଜିଷ୍ଟ୍ରେଟ ଯିବାଦେବାର କଥା ଶୁଣିସାରି ତାଙ୍କୁ ମନା କରି ପଠାଇଲେ ଏବଂ ତାଙ୍କୁ ବରଖାସ୍ତ କରିବାକୁ ଅନୁରୋଧ କଲେ । ଫଳରେ ତାହା ହିଁ ହେଲା । ଦାରୋଗା ଘରେ କାନ୍ଦ ବୋବାଳି ମଚିଲା ।

( ୩ )

ହଜାର ହଜାର ମୃତ୍ୟୁ ଲୀଳା ମନୁଷ୍ୟ ପ୍ରତିଦିନ ଦେଖି ଥିବା ତଥାପି ସେମାନେ ମୃତ୍ୟୁ ପ୍ରତି ଚିର ଭୀତ । ସେ ମୃତ୍ୟୁକୁ ଯେତିକି ଡରେ, ଅନ୍ୟ କାହାକୁ ସେପରି ନୁହେଁ—ମୃତ୍ୟୁ ପାଇଁ ତାହାର ଯେତିକି ଦୁଃଖ ହୁଏ ସେ ଅନ୍ୟ କାହାପାଇଁ ସେତିକି ଦୁଃଖ କରେ ନାହିଁ । ଜଗତରେ ଏହା ଗୋଟିଏ ଅତି ଆଶ୍ଚର୍ଯ୍ୟ ବିଷୟ । ମାୟାର ଅଧୀନ ହୋଇ ମନୁଷ୍ୟ ଦୁର୍ବଳତା ଯୋଗୁଁ ଏପରି ଭୟ କରେ । ମାତ୍ର ସେ ମାୟା ତ୍ୟାଗ କରିବା ମନୁଷ୍ୟ ପକ୍ଷରେ ଦୁରୂହ ବ୍ୟାପାର—ରକ୍ତ ଯେପରି ତାର ରକ୍ତିମା ଛାଡ଼ି ପାରେ ନାହିଁ, ନୀଳ ଯେପରି ତାର ନୀଳିମା ଛାଡ଼ି ପାରେ ନାହିଁ, ଠିକ୍ ସେହିପରି ପୁରୁଷ ପ୍ରକୃତିକୁ ଭଲେ ଛାଡ଼ି ପାରେ ନାହିଁ ।

ମଣିର ସ୍ନେହମୟୀ ବୃଦ୍ଧା ମାଆ ଆଜି ମୃତ୍ୟୁଶଯ୍ୟାରେ ଶାୟିତା । ଡେପୋଟୀ ବାବୁଙ୍କ ସଙ୍ଗରେ ସେଠି ଆଉ ବୁଢ଼ୀ ଆଉ ମୁହୂର୍ତ୍ତେ ବସି ପାରିବେ ନାହିଁ । ତାଙ୍କର ଦେହ କ୍ଷୀଣ ହୋଇଗଲା । ସେ ଝିଅଟିଏ ତଳେ

ପଡ଼ି ଗଲେ । ଶ୍ୟାମ ବାବୁ ଘର ଭିତରକୁ ବଡ଼ କଷ୍ଟରେ ନେଇ ଖଟଉପରେ ଶୁଆଇ ଦେଲେ । ଆଉ ମଧ୍ୟ ଡାକ୍ତରଙ୍କୁ ଡାକିବାକୁ ଚାକରଙ୍କୁ ଆଦେଶ ଦେଲେ ।

ଗଣ୍ଡା ଗଣ୍ଡା ଡାକ୍ତର ଆଇଲେ—ସିଭିଲ୍ ସର୍ଜନ ପର୍ଯ୍ୟନ୍ତ ଆଣିବାକୁ ଶ୍ୟାମବାବୁ ଭୁଲିଲେ ନାହିଁ; ମାତ୍ର ଦଇବର ଆଦେଶ ଅମାନ୍ୟ କରିବାକୁ କାହାର ସାଧ୍ୟ ଅଛି ? ଦୁଇ ଦିନପରେ ବୃଦ୍ଧୀଙ୍କର ଚେତନା ଫେରି ଆଇଲା । ଚେତା ହୋଇ ଆଖି ମେଲାଇ ଚାହିଁଲେ ଏବଂ ମଣିକୁ ପାଖକୁ ଡାକିଲେ ।

ମଣି ଏ କେତେ ଦିନ ହେଲା ଦିନରାତି ମାଆ ପାଦତଳେ ବସିଅଛି । ଆଜି ଆଖିରୁ ଲୁହ ଧାରା ବୁହାଇ କାନ୍ଦୁଛି । ତାର କୋମଳ ମନରେ ଯେ କି ଆଘାତ ଆସିଛି ସେ ଜାଣେ । ଶ୍ୟାମ ବାବୁ ଅତି ସ୍ନେହରେ ତାକୁ ଯେତେ ସାନ୍ତ୍ୱନା ଦେଉଅଛନ୍ତି—ବାଳକ ଶେଷରେ ମନୋଷ ହୋଇ ପାରୁ ନାହିଁ—ପ୍ରକୃତରେ କାହିଁ ହେବ ? ସେ ଯେ ଏହି ବୃଦ୍ଧୀର କୋଳରେ ଜାଣରେ ପାଞ୍ଚ ବର୍ଷ ଦିନୁ ଚଳି ଦୋଳାଇ ଆସିଛି—ସୁଖରେ ଦୁଃଖରେ, ଆଲୁଅରେ ଅନ୍ଧାରରେ, ସେ ତାଙ୍କ ସ୍ନେହ ସଦା ଭଲେ ପାଇଥିଲା । ହାୟ ! ତାର ମା' ତାକୁ ଛାଡ଼ି ଚାଲି ଯିବେ—ସେ କାହିଁ ସହିବ ? ମନକୁ ମନ କାନ୍ଦେ, ସେ ତ ଅବୁଝା ପିଲା ନୁହେଁ—ତାର ବୟସ ଜାଣିଥିଲା, ତାର ବୟସ ଠିକ୍ ଗୋଟିଏ ୭୦ ବର୍ଷର ବୃଦ୍ଧୀର କଥା ଭଳି ।

ଶ୍ୟାମ ବାବୁ ବଡ଼ କଷ୍ଟରେ ତାକୁ ଚାଙ୍ଗରେ ଧରି ରଖିଥିଲେ; ସେ ଖାଇବାକୁ ମନକରେ ନାହିଁ । ସଦାବେଳେ ମାଆପାଖରେ ବସିଥାଏ- ପ୍ରଭୁଙ୍କୁ ଡାକେ । ଯଦି ପ୍ରଭୁ ଶୁଣିବେ—ତା କଳା ଡୋଳାରୁ ଲୁହଧାର ବନ୍ଦ ହେବ ?

ମାଆର ଚେତା ହେବା ଦେଖି, ଆଜି ଅଧିକ ଶାଇତା ଦେଖି ତାର ଶୁଷ୍କ କ୍ଷୀଣ ମୁଖରେ ଆନନ୍ଦର କ୍ଷୀଣ ଜ୍ୟୋତି ଦେଖାଗଲା । ସେ ବୃଦ୍ଧୀ

ନଥିଲା, ତାର ଏ ଆନନ୍ଦ ଶେଷ ଆନନ୍ଦ । ସେ ମାଆର ଅଦ୍ଧାନରେ ତାଙ୍କର ମୁଖ ଚାଟେକୁ ଗଲା । ଅଳ୍ପ ମୁଧ ବୁଢ଼ୀ ଶ୍ୟାମ ବାବୁଙ୍କୁ ପାଖକୁ ଡ଼ାକିଲେ— ଅତି ଧୀର କ୍ଷୀଣ କଣ୍ଠରେ କହିଲେ—

"ତାମା ଆଉ ବେଶୀ ବେଳ ନାହିଁ—ମୋର ଆୟୁ ସରି ଆସିଲାଣି । ଏହି କଥା ପଦକ କହି ବିଦାୟ ନେବି । ତୁ ମୋର ସମ୍ପତ୍ତି ରଖିବୁ— ତୋର ଜନ୍ମ ଏଇ ମୋର ଛାତି ଅସ୍ଥିର କଜଳ ବାଟି ଅର୍ପି ଦେଇଗଲା । ଏହାକୁ ତୁ ମଣିଷ କରି ଧୃତପନ ଶରେ ଦେବୁ ।

"ଅ, ମାଁ ମଣି—କାନ୍ଦେନା—ମୋ ଧନଟିପରା ! ବାପା ପାଖରେ ସୁଖରେ ରହିବୁ ।" ଏହା କହି ହାତଟି ବଢ଼ାଇଲେ ତାକୁ ଧରି ଶ୍ୟାମ ବାବୁଙ୍କୁ ସମର୍ପି ଦେବାକୁ; ମାତ୍ର ବଳ ପାଇଲା ନାହିଁ—ହାତ ଉଠିଲା ନାହିଁ । ଶ୍ୟାମବାବୁ ଝଟ କରି କହିଦେଲେ "ମା, କିଛି ଚିନ୍ତା କର ନାହିଁ । ସେ ମୋର ଆଦରର ଧନ । ଅଦ୍ୟପ୍ରଭୃତି ପରମ ବିଶ୍ୱାସ କର, ମଣି ମୋର ଛାତିର ମଣି ।"

ବୁଢ଼ୀ ଅତିକଷ୍ଟ କ୍ଷୀଣ କଣ୍ଠରେ "ତୋତେ ଆଶୀର୍ବାଦ କରେ— ପରଲୋକରୁ କହିବୁ, ଦୀର୍ଘାୟୁ ହୋଇଥିବ" ଏପରି କେତେପଦ ପ୍ରଳାପ କଲା-ପରି କହି "ମଣି ! ବା ଭୁଲିବେ"—ଏତିକି ମାତ୍ର କହି ଗୋଟିଏ ଦୀର୍ଘନିଶ୍ୱାସ ପରି ଶବ୍ଦରେ ପବନ ଛାଡ଼ିଦେଲେ । ପ୍ରାଣବାୟୁ କେଉଁ ଆଡ଼େ ବହିଗଲା । ମଣି କାନ୍ଦି କାନ୍ଦି ଗଡ଼ିଗଲା । ଶ୍ୟାମ ବାବୁ 'ଭେଁ' 'ଭେଁ' ହୋଇ ଥରେ ଦି ଥର କାନ୍ଦି ପକାଇ ପୁଣି ସମ୍ଭାଳି ନେଲେ; କାରଣ ସେ କାନ୍ଦିଲେ ମଣିକି କିଏ ସାନ୍ତ୍ୱନା ଦେବ ?

ମଣିକୁ କୋଳରେ ପକାଇ ଦେବାଯାଇ ତାଙ୍କ ଶୋଇବା ଘରକୁ ଚାଲିଗଲେ । ଏଣେ ଶବଦାହ ପ୍ରଭୃତିର ବନ୍ଦୋବସ୍ତ କରିବାକୁ ଶ୍ରୀ ଚନ୍ଦନଙ୍କୁ ଡକାଇ ପଠାଇଲେ ।

ଯଥାସମୟରେ ଶ୍ରୀଚନ୍ଦନେ ତାଙ୍କ ଭାଇଙ୍କୁ ଧରି ଶବ ଦାହ ପ୍ରଭୃତି କରି ଚୁଡ଼କ୍ରିୟା କରିବାକୁ ଶ୍ୟାମ ବାବୁଙ୍କଠାରୁ ସ୍ତେହ ଟଙ୍କା ପାଇଁ ଭଲେ ଭଲେ କାମଟି ଚଳାଇଦେଲେ । ବୁଢ଼ୀଙ୍କର ଶ୍ରାଦ୍ଧକାର୍ଯ୍ୟ ପାଇଁ ଶ୍ୟାମବାବୁ ପ୍ରାୟ ୧୦୦୦୦ ହଜାର ପଚିଶ ଟଙ୍କା ଖର୍ଚ୍ଚ କରି ଥିଲେ । ସମସ୍ତେ ଏଥିପାଇଁ ଧନ୍ୟ ଧନ୍ୟ କଲେ ସତ୍ୟ, ମାତ୍ର ତାଙ୍କ ମନ ଏ ପ୍ରଶଂସାରେ ତୃପ୍ତ ନ ଥିଲା । ସେ ଯାହାକୁ ସୁଖୀ କରିବାକୁ ଏତେ କଳ୍ପନା କରିଥିଲେ, ସେ ତ ଚାଲିଗଲା । ତେବେ ତାଙ୍କର ଧୈର୍ଯ୍ୟ ଗୁଣରେ ସେ ସମସ୍ତ ସହିଲେ । ଦୁର୍ଗା ମଣି ପର ସ୍ତ୍ରୀ, ମନ୍ଦାକିନୀଙ୍କର ଝିଅ ତ ସେ ଦିନେ ହେଲେହେଁ ସହିଲେ—ଆଜି ଏହି କ୍ଷଣ ପରବର୍ତ୍ତୀ ପାଛିଲା ଦିନକୁ ଝଡ଼ ପଡ଼ିବାର ଦେଖି ସହିବେ ନାହିଁ ଆଉ କିଏ ?

ଗ୍ରୀଷ୍ମ ଛୁଟିରେ ସତେକ ଗାଁକୁ ଆସିଲା ନାହିଁ—ସେ ଆସିଥିଲେ ହେଲେ ମଣିର ମନବ୍ୟଥା ଟିକିଏ ଊଣା ହୋଇଥାନ୍ତା—କାରଣ ସେ ମା' ମଲା ଦିନୁଁ 'ଧବେଳ' ଭାଇ—ସବୁଠାରୁ ଭଲ ହେବାକୁ ଲାଗିଲା । ତାର କାନ୍ଦ ପ୍ରାୟ ମାସକ ପରେ ଅସ୍ତେ ଅସ୍ତେ କମିଲା । ଛଅମାସ ପର୍ଯ୍ୟନ୍ତ ଶ୍ୟାମବାବୁ ଛୁଟି ନେଇ ଘରେ ରହି ମଣିର ଯତ୍ନ ନେବାକୁ ଲାଗିଲେ । ତାଙ୍କ ଘରେ ଦାସ ଦାସୀ ଛଡ଼ା ଅନ୍ୟ କେହି ନ ଥିଲେ । ସେମାନେ ହଠାତ୍ ଅପରିଚିତା ବାଳିକାକୁ ମୁଣ୍ଡି ଏପରି ଜାଣ୍ଡ ଶାଣ୍ଡ କୁମାରୀକୁ କଷ୍ଟ ଅଯତ୍ନ କରନ୍ତି ଏଥିପାଇଁ ତାଙ୍କର ମନ ଘରୁ ଦରଜା ଛାଡ଼ିବାକୁ ଇଚ୍ଛା ହେଲା ନାହିଁ ।

× × × ×

ରାତି ପାହିଲେ ଗଣେଶ ଚତୁର୍ଥୀ । ଏହି ଦୁର୍ଯୋଗରେ ସରୋଜର ଜ୍ୱର ଧରିଥିଲା ତାର ମୁଣ୍ଡ ଭାରି ବ୍ୟଥା କଲା । ଅମୃତାଞ୍ଜନ ବୋଳିଲା, କେତେ କଥା କଲା, ମାତ୍ର ତାର ମୁଣ୍ଡବ୍ୟଥା କାହିଁରେ ବନ୍ଦ ହେଲା ନାହିଁ; ବରଂ ବେଶୀ ହେଲେ ବଢ଼ିଲା । ପାଖରେ କେହି ନଥିଲା—ଯାହାକୁ ସେ ତାର କଷ୍ଟ କଥା ଖୋଲି କହନ୍ତା । କୋଠରୀର ଅନ୍ୟାନ୍ୟ ପିଲାମାନେ ୪ର୍ଥ ଶ୍ରେଣୀ ପଢ଼ୁଆ । ସେମାନେ ସେଦିନ ଡ୍ରିବେଟିଙ୍ଗ କ୍ଲବର ମାଜ ଦେଖା ନେଇ କମନ୍ ରୁମକୁ ଯାଇ ଗଲେ । ସେ ପଡ଼ି ରହିଲା ଏକା । ଅଳ୍ପେ ଅଳ୍ପେ ଦିନ ୧୦ଟା ବେଳକୁ ତାର ଏପରି ଜ୍ୱର ହେଲା, ସେ ଜାଣେ ନାହିଁ ତା ପରେ କଣ ଘଟଣା ଘଟି ଥିଲା ।

ସେ ବର୍ତ୍ତମାନ କଲେଜରେ ଆଇ, ଏସ୍. ସି. କ୍ଲାସରେ ପଢ଼େ । କଲେଜର ଛାତ୍ରମାନଙ୍କ ମଧ୍ୟରେ ତାର ଅନେକ ସାଥୀ । ତେବେ ବିନୋଦ ଭଳି ଅନ୍ତରଙ୍ଗ ବନ୍ଧୁ ତାର ସେତେବେଳେ ଅଳ୍ପ ଥିଲେ । ଯଦି ସେ କାହାକୁ ତାର ହୃଦୟର ଗୋପନ କଥା କହିପାରେ, ତେବେ ସେ ବିନୋଦ; ଯଦି ସେ କାହାକୁ ତାର ପ୍ରାଣର ଗଭୀର ବେଦନା କହିପାରେ, ତେବେ ସେ ବିନୋଦ । ବିନୋଦ ଗରିବ ପିଲା; ମାତ୍ର ସରୋଜ ଡେପୁଟି ବାବୁଙ୍କ ଏକମାତ୍ର ମାତୃଶୂନ୍ୟ କୁଳାଙ୍କୁର । ଦୁହେଁ ଏକା ବିଷୟ ନେଇ ଏକା କ୍ଲାସରେ ପଢ଼ନ୍ତି—ଏକା ମେସ୍‌ରେ ଖାଆନ୍ତି—ମାତ୍ର ବିନୋଦର ରୁମ୍ ନମ୍ବର ୩୭, ସେ ତଳେ ଥାଏ—ଆଉ ସରୋଜର ରୁମ୍ ନମ୍ବର ୮୭, ସେ ଉପରେ ଥାଏ । ଗଭର୍ଣ୍ଣମେଣ୍ଟ ହାଇସ୍କୁଲରେ ପଢ଼ିଲା ଦିନୁଁ ସେ ଦୁହେଁ ଏକାସଙ୍ଗରେ ପଢ଼ି ଆସୁଛନ୍ତି । ଉଭୟଙ୍କ ମଧ୍ୟରେ ଏପରି ଗୋଟିଏ ପ୍ରୀତି ଅଛି, ଯାହା ଛାତ୍ର ସମାଜରେ ସୁଲଭ ହେଲେହେଁ ଅଳ୍ପ । କାରଣ ଭଲପାଇବା ଅନେକ ଛାତ୍ରମାନଙ୍କ ମଧ୍ୟରେ ଅଢ଼େଇଦିନ ପାଇଁ ରହି କେଉଁଆଡ଼େ ଲୁପ୍ତ ହୋଇଯାଏ । ମାତ୍ର ବିନୋଦ ସରୋଜର

ସେମନ୍ତ ନୁହେଁ—ସେମାନଙ୍କର ପ୍ରେମ ଚିରସ୍ଥାୟୀ । ଉଭୟେ ଉଭୟଙ୍କୁ ଦେଖିବା ପାଇଁ—ଏକାଠି ବସିବା ପାଇଁ—ଏକାଠି ବୁଲିବା ପାଇଁ ଏତେ ଭଲପାନ୍ତି ଯେ, ଜଣକର କାଣି ଅଙ୍ଗୁଳିରେ ଆଘାତ ଅନ୍ୟକୁ ବଡ଼ ବାଧେ । ଏ ପ୍ରୀତି ଆଜକୁ ୭ ବର୍ଷ ହେଲା ଚାଲି ଆସିଅଛି ।

ଦିନେ ଦିନେ ନଈ କୂଳରେ ଦୁହେଁ ସେହି କଥାବାର୍ତ୍ତା ହୁଅନ୍ତି—ସେମାନେ ଭବିଷ୍ୟତରେ ବିବାହ ହେଲେ ତାଙ୍କର ପୁଅଝିଅ ନେଇ କେମିତି ବାନ୍ଧବ ହେବେ । ଏକାଠି ରହିବେ । ବିନୋଦର ଘର ମୋଫସଲରେ । ସେ ଜଣେ କଲେଜ ଛାତ୍ର । ତାର ପିତାର କାଳେକ୍ଟ୍ରିରେ ଆଜକୁ ଦୁଇବର୍ଷ ହେଲା ବନ୍ଦ ହୋଇଛି; ସେଥିପାଇଁ ତା ମନରେ ବଡ଼ ଦୁଃଖ । ତେବେ ପିତାଙ୍କର ଅମୂଲ୍ୟ ଦାନଟି ଉପେକ୍ଷା କରିବାକୁ ତାର ଶକ୍ତି ଅଳ୍ପ ।

ବିନୋଦ ବେଶ୍ ମେଧାବୀ । ଦୁହିଁଙ୍କୁ ଦେଖିଲେ ଜଣାଯାଏ ଯେପରି ଏକା ମାଆର ଦୁଇଟି ପୁଅ । ତେବେ ସରୋଜର ସୌନ୍ଦର୍ଯ୍ୟ କୌଣସି କାରଣରୁ ବିନୋଦ ଅପେକ୍ଷା ସରସ । ଉଭୟେ ମିଷ୍ଟଭାଷୀ, ସରଳ । ପତ୍ର ପତ୍ରିକାରେ ପ୍ରବନ୍ଧ ଲେଖିବାରେ ଉଭୟେ ପଟୁ । ଜଣେ ଜ୍ଞାନର ଆଲୋକରେ ଲେଖିଲେ, ଜଣେ ପ୍ରେମର ସପକ୍ଷରେ—ଜଣେ ଲାଳସାର ବିରୋଧରେ ଲେଖିଲେ, ଜଣେ ସ୍ନେହର ଗୌରବରେ—ଜଣେ ଭକ୍ତି ଲେଖିଲେ, ଜଣେ ଆଦର—ଜଣେ ସେବା ଲେଖିଲେ. ଜଣେ ସୋହାଗ ଏପରି କବିତା ଦୁହେଁ ପ୍ରାୟ ସାମ୍ୟ ରଖି ଲେଖନ୍ତି । ସେଥିପାଇଁ ମଣ୍ଡପର ଯାତ୍ରାର ପ୍ରେମିକ ଯୁଗ୍ମ ସଫଳ ହୁଏ, ସେମାନେ ସୌନ୍ଦର୍ଯ୍ୟର ସ୍ୱରୂପ ଦେଖାଇ ଦେଇଥାନ୍ତି । ସେମାନଙ୍କର ଜୀବନ୍ତ କବିତା ସବୁ ଅଦ୍ଭୁତ ହୁଏ ।

ଦିନ ତିନଟା ବେଳେ ଯେତେବେଳେ କଲେଜର ଘଣ୍ଟା ବାଜିଗଲା, ସେ ଆଖି ମେଲାଇ ଚାହିଁଲା—ଦେଖିଲା ବିନୋଦ ତାର ପାଦ ପାଖେ ବସିଛି ଆଉ କେତେଜଣ ମିଳି ଏ ଆଡ଼େ ଗୋଟାଏ ହେଉଛନ୍ତି ।

ସରୋଜ ପଚାରିଲା—"ଭାଇ ! ତୁ କେତେବେଳୁ ମୋ ପାଖକୁ ଆସିଛୁ ? ବଡ଼ ଜର ହୋଇଥିଲା ।"

ବିନୋଦ କହିଲା—"ଦେହ କଣ ଟିକିଏ ଭଲ ଲାଗୁଚି ? ମୁଁ ଆସିଲିଣି ୧୨ଟା ବେଳୁ ।"

"ଦେହ ଭଲ ଲାଗୁଚି । ଏବେ କେତେଟା ବେଳ ହବ ?"

"ତିନିଟା ।"

"ଓ ହୋ ! ତୁ କଣ ସେତେବେଳୁ ମୋ ପାଖରେ ବସିଚୁ ? ଯା, ମୁଁ ତ ଭଲ ହୋଇଗଲିଣି ।" ଏହା କହି ଟିକିଏ ଉଠି ବସିଲା । ବିନୋଦ ହାତ ଧରାଇ ଦେଇ ଖଣ୍ଡେ ଲେମ୍ବୁ ଚୁଷିବାକୁ ଦେଲା । ଆଉ କହିଲା, "ତୁ ସକାଳ ପହରୁ ଏପରି ପଡ଼ିଚୁ, କା ହାତରେ ଖବରଟା ସୁଦ୍ଧା ଦେଇ ପାରିଲୁ ନାହିଁ ?"

"ଭାଇ ! ମୋର ତ ଆଗ ସକାଳୁଠାରୁ ମୁଣ୍ଡ ବଥାଉଥିଲା; ହଠାତ୍ ଏପରି ଜର ହେବ କିଏ ଜାଣେ ? ଜର ହେଲା ପରେ ମୋର ଚେତା ଚଇତନ ନାହିଁ ଯେ ଖବର ଦେବି ? ପିଲାମାନେ ତ ସେତେବେଳେ ସକାଳଠାରୁ ସ୍କୁଲଗଲେଣି ।"

ଠିକ୍ ଏହି ସମୟରେ ଗୋଟିଏ ଟେଲିଗ୍ରାମ ନେଇ ଡାକ ପିଅନ ହାଜର ହେଲା । ଟେଲିଗ୍ରାମ ନିଜ ନାମରେ ଦେଖି ସରୋଜର ବଡ଼ ସନ୍ଦେହ ହେଲା । ବାପା ଟେଲିଗ୍ରାମ କରିଚନ୍ତି କାହିଁକି ? କଣ କଥା ? ସେ ବିନୋଦକୁ ଫିଟାଇ ପଢ଼ିବାକୁ କହିଲା । ବିନୋଦ ପୁଳିନ୍ଦା ଫିଟାଇ ପଢ଼ି ଶୁଣାଇଲା :—

"ବାପା ଲେଖିଚନ୍ତି ଯେ—ସେ ବର୍ତ୍ତମାନ ଆଜ ଗାଡ଼ିରେ କଲିକତା ଚାଲିଯାଉଚନ୍ତି । ତାଙ୍କର କାମ ବଦଳି ହୋଇଛି—ଘରେ ଚାକର ବାକର ଛଡ଼ା ଅନ୍ୟ କେହି ନାହାନ୍ତି—ମଧୁଆ ପାଖରେ ଯାଉଚି—ସେମାନଙ୍କୁ

ପୂଜା ଛୁଟିରେ ଘରକୁ ନେଇଆସିବୁ ଏବଂ ଶୀଘ୍ର ଘରକୁ ଚାଲିଆସିବୁ । ପାରିଲେ ତୋର ସାଙ୍ଗୀ ବିନୋଦକୁ ସଙ୍ଗରେ ଆଣିବୁ । ମୁଁ ମାଙ୍କ ପାଖରେ ସମ୍ଭବତଃ ସେମାନଙ୍କ ପ୍ରାର୍ଥନା କରି ଚାଲିଆସିବି ।”

କଥାଟା ଶୁଣିସାରି ସରୋଜର ମନରେ ଦୁଃଖ ଆସିଲା । ବାସ୍ତବରେ ସରୋଜିନୀଙ୍କ ଦୁଃଖମୟ ବ୍ୟାପାର । ବାପାଙ୍କର ଶାରୀରିକ ଅସ୍ୱାସ୍ଥ୍ୟ ନେଇ ସେ ଦୁଇବର୍ଷ ତଳେ ବଡ କଷ୍ଟରେ ବଦଳି ହୋଇ ରାଜ୍ୟକୁ ଆସିଥିଲେ ! ପୁଣି କାହିଁକି ପଡ଼ିଗଲା — ସେହି ଦୂରକୁ ଟାଣି ନେବାକୁ ? ମାତୃହୀନ ସନ୍ତାନର ଏକମାତ୍ର ପିତା ସମ୍ବଳ । ସେ ଗ୍ରୀଷ୍ମ ଛୁଟିରେ ଘରକୁ ଯାଇ ନଥିଲା, ଏବେ ପୂଜାରେ ଯାଇ ବାପାଙ୍କୁ ଟିକିଏ ଦେଖି ପାରିବ ନାହିଁ — ଏଥିପାଇଁ ତାର ମନ ବଡ଼ କଷ୍ଟ ଦୁଃଖ ହେଲା ।

ବିନୋଦକୁ ପଚାରିଲା — “ଯିବୁ ?” ବିନୋଦ କହିଲା — “ହଁ; ମୁଁ ତ ତୋ କଥା ସଦାବେଳେ ଅମାନ୍ୟ କରେ । ଅଚ୍ଛା ସରୋଜ, ନଣି କଣ ଗାର୍ଲସ୍ ସ୍କୁଲରେ ପଢୁଛି ?”

ସରୋଜ କହିଲା — “ହଁ ତା’ ଚିଠି ପଢ଼ି ନାହୁଁ କି ସୁନ୍ଦର ଲେଖା ତାର — ସେପରା ମୋ ବାପାଙ୍କର ଝିଅ, ସେ.ର ଭଉଣୀ । ମୁଁ ତାକୁ କେବେ ଦେଖି ନାହିଁ — କେବଳ ତା’ ଚିଠି ବାପାଙ୍କ ଚିଠିରୁ ଯାହା ପାଏ । ଆମେ ଘରକୁ ଗଲେ ତିନିହେଁ ଏକାଠି ରହିବା । ତୁ ଯିବୁ ତ ନା, ଠିକ୍ କରି କହ । ତୁ ତ ପାଗଳ, ସେଠି କେଉଁଦିନ କହିବୁ ନାହିଁ ଘରକୁ ଯିବା ।”

“ନାଇଁ ମ, ମୁଁ ଯିବି କହୁଛି — ବାପାଙ୍କ ବିଜୟୀ ଧର୍ମବତାର କଥା ‘ନବୀନ’ ରେ ବାହାରୁଥିବା ପଢ଼ିଛି — ଯାହାଙ୍କୁ ନ ଦେଖିଲେ କଣ ସମ୍ଭବ ଯିବ ମଣି ତ ଚିଠିରେ ତୋତେ କଣି ନେଇଛି — ମୁଁ ତାକୁ କଥାରେ କଣିନେବି । ଏ ତ ଏକଦମ ଛୋଟବେଳେ କେଶ ସରୋଜ !”

"ତୁ କଣ ଦେଖି ନାହୁଁ, ସେ ଯେ ଗୀତଛନ୍ଦ ବାବାଙ୍କ ପାଇଁ ମଣି ଲେଖିଥିଲ—ତାହା ମୋ ପାଖକୁ ପଠେଇ ଥିଲେ । ଗହ୍ବର ଭିତରେ ମଧ୍ୟ ଦେବତା ଅଛନ୍ତି ରେ ! ଦଳେ ସନା ଜାତି,ସମାଜ ସମାଜ, କହ୍ନ ମନୁଷ୍ୟଙ୍କୁ ସ୍ନାନ କର ଥୋଇ ଦେଇଚନ୍ତି; ନଚେତ୍ କୋଇଲି ଖଣିରେ ହୀରା ନାହିଁ କିଏ କହିଲା ? ମାଟିଭିତରେ ସୁନା ଲୁଚା ରହିଛି—ବାହାର କର ପାରିଲେ ହେଲା ।"

ତୁଳସୀଙ୍କ ଏପରି କେତେ କଥାବାର୍ତ୍ତା ହେଲେ । ତା ପରେ ମନୋରମାର ସମ୍ବନ୍ଧ ଯାଚନ ହେଲା । ସରୋଜ ସୁସ୍ଥ ହେଲା । ଅଉ ଜ୍ୱର ହେଲା ନାହିଁ । କଲେଜ ଛୁଟି ହେବାର ପାଇଁଛଅ ଦିନ ଆଗରୁ ତୁଳସୀ ଦାଦା ସରୋଜର ଗାଁକୁ ଚାଲିଗଲେ ।

ଘରେ ପହଞ୍ଚି ଦେଖିଲେ—ଦାଣ୍ଡ ଦୁଆରେ ଶୁକରାଣୀ ପିଲା ରେବତୀ ଏକ ଦୁର୍ଘଟଣାରେ ଶୁଆଇ ରହିଛି—ତା ପାଖରେ ତାର ମା' ଛିଡ଼ା ହୋଇ ତାକୁ କଣ କହୁଛି । ଦାସିଆ ଭଣ୍ଡାରୀ (ଶୁକର) ଖୁଡ଼ୀ ମୁଠାଏ ଧରି ଉପର ମହଲାର ଝରକା ପାଖ ସବୁ ଓଳାଉଛି ।

ଘରେ ପହଞ୍ଚିବା ସାଙ୍ଗେ ସାଙ୍ଗେ ସମସ୍ତଙ୍କର ଆନନ୍ଦର ସୀମା ରହିଲା ନାହିଁ । ଶୁକର ପୂଜାରୀ ସମସ୍ତେ ମିଶି ପିଲା ବାବୁଙ୍କ ଚର୍ଚ୍ଚାରେ ଲାଗିଲେ । ଶ୍ୟାମ ବାବୁଙ୍କ ସଦ୍ ବ୍ୟବହାରରେ ଏହି ଶୁକର ପୂଜାରୀ ଗୋଟିଏ ଗୋଟିଏ ସୁନା ପ୍ରତିମା ଥିଲେ । ଦାସିଆ ଭଣ୍ଡାରୀକୁ ସଦା ବାବୁ କହିବେ, 'ଦାସିଆ ! ଏ କଣ୍ଟୁରୀରେ ତୋ ଦେହରୁ ଖଣ୍ଡେ ହାଣି ତର ମୋଟିଆ ହେବନି—ସେ ଯେପରି ଲୋକ ଝଟ୍ କରି ହାଣି ଦେଇ ଦେବ । ସେ କଣ୍ଠ ହମକ୍ ସହୁ । ଆଜକୁ ୩୦ ବର୍ଷ ହେଲା ସେ ଏହି ଘରେ ଅଛି । ଏପରି କୌଣସି ଦିନ କେବେ ସେ ଟିକିଏ କଥାରେ ହମକ୍

ହରାମ୍ ବୋଲି ଧରି ପଡ଼ୁ ନାହିଁ । ତାର ସରଳ ବ୍ୟବହାର ସବେକଙ୍କୁ ବେଶ ଭଲ ଲାଗେ ।

ଦାସିଆ ଅଳକାଲି ଏତେବଡ଼ ଘରର ମାଲିକ । ମନ୍ଦାକିନୀ ମରିଯିବା ଦିନଠୁ ତାର ମନ ସଦାବେଳେ ବିଷାଦଭରା ଥିଲା । ଯେଉଁ ଦିନୁଁ ମଣି ଘରକୁ ଆସିଲା ସେହିଦିନୁଁ ସେ ତାକୁ ନେଇ ଆନନ୍ଦରେ ଚଳି ଯାଉଥିଲା, ମାତ୍ର ବାବୁ ତାକୁ ବେଶୀଦିନ ଘରେ ରଖିଦେଲେ ନାହିଁ । ମୋଟେ ଗୋଟିଏ ମାସ ଘରେ ରଖି ତାକୁ ମିଶନ ଇସ୍କୁଲ ବୋର୍ଡିଂକୁ ପଠାଇ ଦେଲେ । ଏକ ସବେକକୁ ଦେଖି ତାର ପାଦ ତଳେ ପଡ଼ୁନାହିଁ, ଦାସୀଅର ଆଉ କେହି ନ ଥିଲା, ତାର ସ୍ତ୍ରୀ ଅସନ୍ତାନ ହୋଇ ବହୁଦିନୁ ମରିଯାଇଛନ୍ତି ସେ ଏକା, ତେଣୁପାଇଁ ତାର ସବେକ ପ୍ରତି ବଡ଼ ମାୟାମମତା । ତା ସାଆନ୍ତାଣୀ ମଲା ଦିନୁଁ ସେ ସବେକକୁ କୋଳରେ କାଖରେ କରି ଏତେବଡ କରିଛି । ସେ ତ ଆନନ୍ଦ ନ ହେବ, ଆଉ କିଏ ହେବ ?

" ଭଲ ଅଛୁ ଦାସିଆ !"

ଅଜ୍ଞା—ହଜୁର, ଭଲ ଅଛି କହି ଦାସିଆ ପିଲାବାବୁଙ୍କୁ ଦେଖି ହସି ପକେଇଲା । ଆଉ କିଛି କହି ଗୋଟିଏ ମୁଣ୍ଡିଆ ମାରି ପଳାଇଲା । ଉଚିଆଡ଼ ଦେଖିଲା, ସେଥର ଯେଉଁ ନୂଆବାବୁ ଆସିଥିଲେ ସେ ଅସିଚନ୍ତି, ତେଣୁ ତାଙ୍କୁ 'ଓଲଦ ଓଲକ ନୂଆ ବାବୁ' କହି ମୁଣ୍ଡିଆ ଟିଏ ମାରି ଉଠିଲା । ବିନୋଦ ଦରହସା ଦେଇ ଦୀର୍ଘାୟୁରସ୍ତୁ ବୋଲି ଗୋଟିଏ କଲ୍ୟାଣ କରି କହିଲା—"ଦେଖିଲୁ, ଦାସିଆ—ଏ ପିଲା ବାବୁ ଉଚିତ ସୁଖ ପାଉ ନାହାନ୍ତି—ସୁଖ ପାଉଥିଲେ କଲ୍ୟାଣ କରୁ ନଥାନ୍ତେ—?"

ଦାସିଆ କହିଲା—"ହଜୁର ତ ତାଙ୍କର ସଖା । କୃଷ୍ଣ କଣ, ଅର୍ଜୁନ କଣ, ଯେ ହେଲେ କଲ୍ୟାଣ ହେଲେ ଗଲା । ପିଲା ବାବୁ ତ କୃଷ୍ଣ—ତମେ ତ ଅର୍ଜୁନ । ରୁକ୍ମିଣୀଟିଏ ହେଲେ ତ ଘର ଉଜ୍ଜଳନ୍ତା ।"

ସରୋଜ—"ଧାଡୁ ବସୁଅ, ବଡ଼ ଚୋଁ ଅଠା ଛାଡ଼ୁଆଇଛ" କହି ଉପରକୁ ଯିବା ପୂର୍ବରୁ ଦାସିଆ କହିଲା, "ସିଲ ବାବୁ—ବାବୁଙ୍କ ନାଆଁରେ ଏହି ଚିଠିଟା କଣ ଦଅ ।"

ସରୋଜ ଚିଠି ପଢ଼ି ଦେଖିଲା—ବାଲିକା ସ୍କୁଲର ପ୍ରିନ୍ସିପାଲ ମିସ୍ ରାୟ ଲେଖିଚନ୍ତି ଯେ—"୧୭ ତାରିଖରେ ଛୁଟି ହେଉଅଛି—ସେଦିନ ନନ୍ଦିନୀକୁ ଆସି ନେଇଯିବେ ।"

ଆଜି ୧୭ ତାରିଖ—ସରୋଜ ଧଡ଼ପଡ଼ ହୋଇ ଦାସିଆକୁ କହିଲା, "ଯାଅ—ଡ୍ରାଇଭରକୁ ଉପର ବେଳା ଯିବାପାଇଁ ଯାଗଲ ହେବାକୁ କହିଦେ ।" ଦାସିଆ ଚାଲିଗଲା । ଏଣେ ବିନୋଦ ସରୋଜ ଖାଇ ପିଇ ବେଳରେ ଆସି ଥିବା ଗାଡ଼ି ଅନ୍ଦରା ଯୋଗେ ଶୋଇପଡ଼ିଲେ । ସେମାନେ ତାର କରିଥିଲେ ଦାସିଆ ମଠର ପଠାଇ ଦେଇଥାନ୍ତା; ମାତ୍ର ଅଦ୍ଭୁତ ଭାବରେ ଷ୍ଟେସନରେ ପହଞ୍ଚି ବଳଦ ଗାଡ଼ି ଛଡ଼ା ସେଦିନ ଘୋଡ଼ା ଗାଡ଼ି ଖଣ୍ଡେ ସୁଦ୍ଧା ପାଇଲେ ନାହିଁ । ଷ୍ଟେସନରୁ ଘରକୁ ଚାରିମାଇଲ ବାଟ । ବଳଦ ଗାଡ଼ିଟାରେ ଧକର କଚର ହୋଇ ଆସି ଦୁହିଙ୍କୁ ବଡ଼ କଷ୍ଟ ହୋଇଥିଲା । ତେଣୁ ଦୁହେଁ ଏକାଠି ଜଣ ଦଶଗୁଣ୍ଡା ଗିଲି ଦେଇ ଝଟ ଧଇଲେ । ନିଦ ଭାଙ୍ଗିଲା ତିନିଟା ବେଳେ ସରୋଜର ।

*

ବିନୋଦ ଏ ବର୍ଷର ସୁଖସ୍ୱପ୍ନ ଭାଙ୍ଗିବାକୁ ସରୋଜର ଇଚ୍ଛା ନ ଥିଲା । ତେବେ ଭାଙ୍ଗିବାକୁ ବାଧ୍ୟ ହେଲା—କାରଣ ସେମାନେ ୨୦ ମାଇଲ ରାସ୍ତା ଯିବେ । ସରୋଜର ପିତାଙ୍କ ଘର ଯଦିଓ ଗୋଟିଏ ସହରରେ, ତେବେ ସେଠାରେ ଗୋଟିଏ ସେକେଣ୍ଡାରୀ ସ୍କୁଲ ବାଳକମାନଙ୍କ ପାଇଁ, ଅଉ ଗୋଟିଏ ପ୍ରାଇମେରୀ ସ୍କୁଲ ବାଳିକାମାନଙ୍କ ପାଇଁ ଛଡ଼ା ଆଉ କିଛି ନ ଥିଲା । ତେଣୁ ସରୋଜ ସୁଦୂର ଦେଶରେ କଲେଜରେ, ଅଉ ମଣି ଘରଠାରୁ ନିକଟ ୨୦ ମାଇଲ ଦୂରବର୍ତ୍ତୀ ସ୍ଥାନରେ ମିଶନ ହାଇସ୍କୁଲରେ ପଢ଼ୁଥିଲା ।

:

ଆଜ ମଙ୍ଗଳବାରରେ ଯାଇ ରହିଥିଲେ ସେମାନେ ଚାଲି ଯିବାକୁ ଗୁଲିଅଛିବେ; କାରଣ ମଣିର ମର୍ଣିଂ ସ୍କୁଲ ଭୋଳ ସ୍କୁଲ ବନ୍ଦ ହେବ। ବିନୋଦ କଥାରୁ କଥାନ୍ତର ହୋଇ ଉଠିଲା। ସରୋଜର ଅନାହୂତ ନେ ଗ୍ରହଣ କଲା ନାହିଁ, ଅଖି ମଳୁ ମଳୁ କହିଲା—"ଏ ହଁଥି ଲଗା ଦପହର ଠାରେ ମଣିଷ ଟିକିଏ ଶୋଇପାରିଲା ନାହିଁ।"

ସରୋଜ କହିଲା—"ବେଶ୍ ମାଇକିନା କଥା ତ ତତେ ଅପେ ବିନୋଦ।"

"ହଁ, ଅବେ ନାହିଁ; ଆଉ କଣ? ଅରେ ଏ ଯୁଗରେ ସ୍ତ୍ରୀ କଣ ପୁରୁଷ କଣ? ସୃଷ୍ଟିର ବୁଝିଛି ରହସ୍ୟ।"

ସରୋଜ ଯିବାକୁ ତରତର; ତେଣୁ ସେ "କହିଲି—ତୁ' ଯିବୁକି ନା। କହ—ନରେନ୍ତ୍ ମୁଁ ଯିବି।"

ବିନୋଦ ଯିବାକୁ ନାହିଁ ଚାହିଁ। କହିଲା—"ତୁ ଯା—ମୁଁ ଟିକିଏ ଅଗ ଦିନଠାଏ ଖୁବ୍ କରି ଶୁଏଁ। ତା ପରେ ମଣି ସହିତ ଦେଖା ହବ।"

ସରୋଜ ଆଉ ଶୁଣି ପାରିଲା ନାହିଁ। "ତୁ ଥାରେ ଠୋକା" ଏତିକି କହି ଦରହସିତ ମୁଖରେ ଦଣ୍ଡକେ ମଟରକାରରେ ବାଧି ଚାଲିଗଲା।

* * * *

ମଣି ପଚାରିଲା, "ଭାଇ! ତମେ କଣ ମୋର ସବୁ ଚିଠି ପାଅ? କାହିଁ କେବେ ତ ଖଣ୍ଡେ ଉତ୍ତର ଦିଅ ନାହିଁ?"

ସରୋଜ କଣ କହିବ—ବାସ୍ତବରେ ସେ ମଣିର ବହୁତ ଥର ଚିଠି ପାଇଛି, ମାତ୍ର କେବେ ତାକୁ ଖଣ୍ଡେ ହୋଇଲେ ଖଣ୍ଡେ ଚିଠିର ଉତ୍ତର ଦେଇ ନାହିଁ! ତାର କାରଣ—କିଏ ଲେଖିବ? ପୁଣି ତାର ଆଳସ୍ୟ। ସୁତରାଂ ବାଳିକାକୁ ଭୁଲାଇବା ପାଇଁ କହିଲା—"ବାଳିକା-

ସ୍କୁଲର ନିୟମ ଅଛି, ସେଠି ପିଲାଙ୍କୁ ବେଶୀ ଚିଠିପତ୍ର ଲେଖିବାକୁ ଦିଆଯିବ ନାହିଁ, ବୃଥାରେ ଦେଲେ କଣ ହେବ—ଭୂ କଣ ଏଡ଼ୁ ପାଥିଲୁ !"

ମଣି କହିଲା—"ମ, ପାଞ୍ଚଦିନରୁ ସାତଦିନରୁ କେଉଁଠି ଚିଠି ପିଲେ ଘାଳୁଚନ୍ତି । ଆଉ ମୋ ଚିଠି କାହିଁକି ନ ଦେବେ ?"

ସବୋଜ ଅନ୍ୟ ପ୍ରକାରରେ ଫାଙ୍କି କହିଲା, "ବାପା ପଣ୍ଡି ମନା କରିଚନ୍ତି—ମତେ ତୁ ଯେପରି ବେଶୀ ବେଶୀ ଚିଠି ପତ୍ର ଦେବୁ ନାହିଁ—କାରଣ ସେ ଚିଠି ପଢ଼ି ଉତ୍ତର ଦେଇ ଦେଇ ଦିନ ଯିବ । ପାଠ ପଢ଼ିବାରେ ତାର କ୍ଷତି ହେବ ।"

ମଣି ହଠାତ୍ କହିଲା—"ବାବା ତ ଚିଠି ମତେ ପୁଣି ପ୍ରତି ସପ୍ତାହରେ ଦିଅନ୍ତି । ଅନେକ କଥା ଲେଖି ଥାଆନ୍ତି—ପୁଣି ଭାଇର ଚିଠି ପାଇବାକୁ ନାହିଁ ବୋଲି ସବୁ ରହନ୍ତି । ଭାଇ ଆଦୌ ଚିଠି ଦେଉ ନାହାନ୍ତି କହିଲେ ସେ ଲେଖିପଠାନ୍ତି ଯେ, କୌଣସି ଅସୁବିଧାରୁ ଦେଇ ନଥିବ । ମୁଁ ଲେଖେଁ ଯେ, ଭାଇ ମତେ ଭଲ ପାଆନ୍ତି ନାହିଁ—ବୋଧହୁଏ ମୋ ଉପରେ ଚଢ଼ିଚନ୍ତି । ସେଠୁ ସେ ଲେଖନ୍ତି ଯେ, ନା ନା, ସେ ସେପରି ନୁହେଁ । ଅଉ ତମେ ଏମିତି କଣ କହୁଚ ?"

ସବୋଜ କଣ କହିବ, ଏଥିକି ଉତ୍ତର କଣ ? ଶେଷକୁ ବାଧ୍ୟ ହୋଇ କହିଲା, "ନା ମଣି, ଦେଇ ପାରୁ ନାହିଁ ଚିଠି ପତ୍ର; ତେବେ ତଦ୍ଦ୍ୱାରା ତୋର ଉପକାର ହୋଇଛି । ମୁଁ ତତେ ବଡ଼ ଭଲ ପାଏ । ମୋର ଭଉଣୀ ନାହିଁ, ଏଥିପାଇଁ ମୁଁ ସାଙ୍ଗ ପିଲାଙ୍କୁ କହି ଦୁଃଖ କରେ—ଆଉ ତୋପରି ଭଉଣୀ ପାଇ ମୁଁ କେତେ ହେବି ? ତୋର ମୋ ଚିଠି ପଢ଼ିବା ସମୟ ଛଡ଼ କେ ପଢ଼ାରେ ଲାଗିବ, ଏହାଦ୍ୱାରା କଣ ଭଲ ହୋଇ ନାହିଁ ?"

ବାସ୍ତବରେ ସବୋଜର ମତ ଏହା ନୁହେଁ, ସେ ବହୁତ ଚିଠି ଲେଖେ ।

ଚିଠି ଲେଖାଦ୍ୱାରା ଯେ ସେମାନଙ୍କର ଅନିଷ୍ଟ ହେବ, ସେ କଥା ଏତେ ଛୋଟ ପିଲାଙ୍କ ମନର ଶକ୍ତି ନୁହେଁ । ମଣିକୁ କୌଣସି ଉପାୟରେ ତୋଷ କରିବା ତାର କଥା ।

ମଣି କ'ଣ ତା' ମାନେ ? ସେ ବଡ଼ ଚତୁର । ସେ ଝଟ୍ କିଛି କହିଲା, "ଅଛି ଭାଇ, କେବଳ କଣ ମଣିଷ ଚିଠି ପାଠ ପଢ଼ିବ—ତା ଛଡ଼ା ସେ ଚିଠି ଲେଖିବ ନାହିଁ, କାହିଁ ଆଉ ଲେଖିବ ନାହିଁ—ଖେଳିବ ନାହିଁ, ବୁଲିବ ନାହିଁ—କେଉଁ ପଢ଼ୁଥିବ ? ମୋର ଭାଇ କ ତା ମତ ନୁହେଁ । କେତେ ପିଲା ଦିନ ରାତି ହେଉଥାନ୍ତି । ମୁଁ ସେ ଲୋକଙ୍କୁ ଭଲପାଏ ନାହିଁ । ତମେ ମନେ ଠିକ୍ ପଢ଼ୁଥିବ, ତେବେ ଏଣିକି ଚିଠି ଦେବ ।"

ଏଥର ସରୋଜ ତେଣୁଥରେ ହିଁ ଭରିଲା, ଏବଂ କହିଲା—"ମଣି, ବାପାଙ୍କର ବଦଳି ହେଉଛି, ସେ ୭ ଦିନ ଭିତରେ କଲିକତା ଗଲେ ।"

ମଣି "ବାପା କାହିଁକି ବଦଳି ହେଲେ, ସେ ଏଥର କେଉଁଠାରେ କେତେ ଦିନ ରହିବେ" ଇତ୍ୟାଦି ନାନା ପ୍ରଶ୍ନ ପଚାରି ମଣିରୁ ମନର ଯାଇ ବୁଝିବାକୁ ଲାଗିଲା । ମଣି ବିନୋଦକୁ ନୂଆ କରି ତାଙ୍କ ଘରେ ଦେଖି ଆଶ୍ଚର୍ଯ୍ୟ ହେଲା । ମାତ୍ର ସେ କଏ ବୋଲି କାହାକୁ ପଚାରିଲା ନାହିଁ ।

ତାପରେ ଆସି ତାର ସ୍ନେହର ଦୁଲାଳୀକୁ ଘରକୁ ନେଇ ଗଲା । ନମସ୍କାର ବଡ଼ ଆନନ୍ଦିତ ହେଲେ । ଝିଅ ଘର ଭଲ ନାରୀଙ୍କ ସରସା ହାତ କାମ ହୋଇ ଉଠିଲା ।

ବିନୋଦ ଭାବିଥିଲା, ମଣି ହଠାତ୍ ତାକୁ ଖାଲି ବୋଲି ଜାଣି କେତେ କଣ ପଚାରିବ, ମାତ୍ର ମଣି ତାକୁ ଟିକିଏ ମାତ୍ର ଚାହିଁଲା ନାହିଁ । ସେଥିପାଇଁ ତା ମନରେ ଦୁଃଖ ହେଲା । ସରୋଜ ସେ ବିନୋଦ କଥା ଆଦୌ ତାକୁ କହି ନାହିଁ, ତାର କାରଣ—ସେ ମଣିର ସ୍ୱଭାବ ପ୍ରକାର

ପ୍ରଶ୍ନର ଉତ୍ତର ଦେଇ ଦେଇ ଅବସର ମଧ୍ୟ ପାଉ ନ ଥିଲା । ବିନୋଦ ମଣିର ପରିଚୟ ଜାଣେ, ମାତ୍ର ମଣି ବିନୋଦକୁ ଚିହ୍ନେ ନାହିଁ ।

ଟିଫିନର ଘଣ୍ଟା ବାଜିଗଲା । ଖାଇବାକୁ ସମସ୍ତେ ଏକାଠି ହେଲେ । ସେମାନଙ୍କ ପାଇଁ ହଷ୍ଟେଲ ଘରୁ ଭିନ୍ନଟା ଖାଦ୍ୟ ଏକାଠି ବଢ଼ା ହେଲା । ବାଛିଅ ଖାଇବାକୁ ଯିବାକୁ ସମସ୍ତଙ୍କୁ ଅଧ୍ୟ କହିଦେଲା । ମାତ୍ର ମଣି ଏକାଠି ବସି ଖାଇବାକୁ ମଙ୍ଗିଲା ନାହିଁ । ତାର ଦାରୁ ଲାଜ । ସେ ଅନ୍ୟ ଜଣଙ୍କୁ କିଛି, କହେ ନାହିଁ । ସେ ସେଇଠି ବସି ମାଇକିନିଆଁ ଝିଅ ହୋଇ ବୁଣ୍ଟା ପାଣିକୁ ନେବ କିପରି ? ତାର 'ବୁଢ଼ୀ ମା' ମରି ଯାଇ ଚାରି ବର୍ଷ, ମାତ୍ର ଛପ ତାଙ୍କଠୁ ସ୍ତ୍ରୀସୁଲଭ ଯେଉଁ ଲଜ୍ଜା, ବିନମ୍ରତା କୋମଳତା ସମ୍ପୂର୍ଣ୍ଣ ଶିକ୍ଷା କରିଥିଲା, ତାହା ମିସନ ଗାର୍ଲ ସ୍କୁଲରେ ପାଠ ପଢ଼ିଲେହେଁ ଛାଡ଼ି ନାହିଁ, କି ଛାଡ଼ିବ ନାହିଁ—ଏହା ତାର ପ୍ରତ୍ୟେକ ବ୍ୟବହାରରୁ ଜଣା ପଡ଼ୁ ଥିଲା ।

ସରୋଜ ପ୍ରଥମେ ଏହି କଥାଟା ଜାଣିପାରି ମଣି ପାଖକୁ ଆସି ପଚାରିଲା—"ଅଲଗା ଖାଇ ବସିବୁ କିଆଁ ? କଏ ଅଛୁ କି ?"

ମଣି କିଛି ଉତ୍ତର କରି ନ ଥିଲା । ଏଣେ ସରୋଜର ହେଉ ନ ଥିଲା—ବିନୋଦକୁ ମଣି ଏଯାଏ ଚିହ୍ନି ନାହିଁ ବୋଲି । ତେଣୁ ସେ ତାକୁ ବୁହାଇ ବୁହାଇ ପଚାରିଲା—"ଭଉଣୀ ନାଉଁ ?" ମଣି କଣ କହିବ ? ତେବେ କହିଲା ଏଥର—ନ କହିଲେ ଚଳିବ ନାହିଁ—ଧୀରେ ଧୀରେ କଣ ଭାବି ଚାହିଁଲା ସେ—

ବୁଦ୍ଧିମାନ୍ ସରୋଜ ଏଥର ଜାଣିପାରିଲା—ଆଉ ଆର ଘରୁ ବିନୋଦକୁ ଡାକି ଆଣି କହିଲା—"କି ବିନୋଦ ବାବୁ ! ଆପଣଙ୍କର ଏ ଯାଏ ମଣିଙ୍କ ସାକ୍ଷାତ ପର୍ଯ୍ୟନ୍ତ ହୋଇ ନାହିଁ ? ବାଃ ବାଃ !"

ମଣିକୁ କହିଲା—ମଣି, ଏ ମୋର ସାଙ୍ଗ ସନ୍ତୁ—ବିନୋଦ । ଆମେ ଦୁହେଁ ଏକକୁ ପିଲାଦିନୁ ସାଙ୍ଗହୋଇ, ପାଠ ପଢ଼ିଲୁଣି । ପ୍ରଥ କ୍ଲାସରେ ସମାନଭାବରେ ପଢ଼ି ପଢ଼ି ଯାଉ ଅଛୁଁ । ଏ ଅବସରକୁ ଟିଙ୍କ ଥର ଆସିଛି । ବାପା ଏକୁ ବଡ଼ଭଲ ପାଆନ୍ତି, ମୁଁ ଯାହା ସେ ତାହା— ଭାଠି ତୋର ଲାଜ କଣ ?''

ବିନୋଦ ତୃନି ହୋଇ ରହିଥାଏ । ସେସବୁ ସୂନା ପ୍ରଶ୍ନମାନ । ସେଦିନ ବସ୍ତେ ନସ୍ତେ ଏକୋଠି ଖାଇ ବସିଲେ; ମାତ୍ର ମଣି ସେଦିନ ବିନୋଦ ସାଙ୍ଗରେ ମିଶିପାରିଲା ନାହିଁ । ଦୁଇ ଗୁରୁଦାନରେ ଅତ୍ୟନ୍ତ ଅତ୍ୟନ୍ତ ମିଳାମିଶା ହୋଇଗଲା ।

ପିଲାମାନେ ଏକାଠି ବସି ନାନା ଅଲୋଚନା କରନ୍ତି । ସୁଖରେ ଦିନ ଦିନ ହୋଇ ଛୁଟି କଟିବାକୁ ଲାଗିଲା । ଦିନେ ମଣି କେତେଟା ଗୁଡ଼ାଏ ମାଳତୀ ଫୁଲ ତାଙ୍କ ବଗିଚାରୁ ବଡ଼ କଷ୍ଟରେ ତୋଳି ଆଣି କେତେଗୁଡ଼ାଏ ମାଳ ତିଆରି କରିଥିଲା । ସେ ଘରେ ରହୁ ମିଛରେ ସେ ରହି ନ ଥାଏ । ଘର ଦୁଆର୍ ଝିଙ୍କାଏ ଅଯଥା ଦେଖିତେ ନ ସବୁ ସଜା । କହେ—ମୁଁ ଏହିସେଇ ତାସ ଘର ଝାଡ଼ମଡ଼ ଦେବି । ପିଲା ଦିନରୁ କାର୍ଯ୍ୟ ସନ୍ଧ୍ୟା ମଣି ଘର କାମ ବିଷୟରେ ବଡ଼ ପଟୁ ଥିଲା । ଏତେବଡ଼ ପରିବାରରେ ଧନୀ ଘରେ ରହି ସୁଦ୍ଧା ଏଟି ତାର ଝିଅଟିଏ ଉପୁଜିଙ୍ଗ ରହି ଯେ କେହି କେବେ ଦେଖି ନଥିଲା । ଦାସଦାସୀ ସୋଇଲୀ-ପଇଠାରି ତାକୁ ଏତେ ଭଲ ପାଉଥିଲେ ଯେ, ସମସ୍ତେ ତାକୁ ଦେଖିବାକୁ ଯୁଡ଼ି ଭଲ ପାଉଥିଲେ ।

ମାଳତୀ ଫୁଲଗୁଡ଼ିକ ମାଳ ତିଆରି କରି କେତେଗୁଡ଼ାଏ ମହା-ପ୍ରଭୁଙ୍କୁ ଦେଇ ବାକି ଦୁଇଟି ମାଳ ସେ ସାଇତି ରଖିଦେଇ ଦିନେ ଭାଇମାନଙ୍କ ଅପେକ୍ଷାରେ ବସିଥିଲା । ସେ ଦିନ ସବୋଳ ଆଉ ବିନୋଦ ନଈ ବଢ଼ି ଦେଖି ଯାଇଥିଲେ । ଫେରିଲା ପରେ ମଣି ମାଳ ଦୁଇଟି

ବିନୋଦ ଆଜି ପରେଶକୁ ଦେବାକୁ ଯାଇ ଦେଖିଲା—ବିନୋଦ ଗୋଟିଏ ଘରେ ଏକା ବସିଛି ପରେଶ ନାହିଁ । ବିନୋଦ ଫୁଲମାନଙ୍କୁ ଦେଖି ଅତୀବ ଆନନ୍ଦ ହୋଇ କହିଲା, "ବାଃ ! ଏ କଣ ତୋ' ହାତତିଆରି ମଣି ? ବଡ଼ ସୁନ୍ଦର ହୋଇଛି ।" ସରଳ, ନମ୍ରତା, କୋମଳ ବାଳକଟା ପ୍ରଶଂସା ଶୁଣିବାକୁ ପାଇ ତୃପ୍ତ ହୋଇଥିଲା, ମାତ୍ର ପରେଶ ଯେତେବେଳେ ନିଜ ମାଳଟି ଦେଇଥିଲା, ତାକୁ ଅବଜ୍ଞାରେ କେଉଁଠି ପକାଇ ଦେଇ କିଛି ନ କହି ଚାଲିଯାଇ ଥିଲା । ଏଥିରେ ବାଳକଟା ମନରେ ଯେ କି କଷ୍ଟ ହୋଇଥିଲା, ତା' କହିଲେ ନସରେ ।

ଏଯାଏ ପରେଶ ଏହି ମଣିର ଅଭିମାନ ଅଛି କି ନ ଅଛି ଆଦୌ ଜାଣି ନ ଥିଲା । ଏଥର ଜାଣିପାରି ବାଧ୍ୟ ହୋଇ ତାର ଅଭିମାନ ହୃଦୟକୁ ଶାନ୍ତ କରିବା ପାଇଁ ପାଖକୁ ଡାକିନେଇ କହିଥିଲା, "ମଣି ! ମଣି ! କାନ୍ଦୁଛୁ ! ମୁଁ ଫୁଲ ନେଲି ନାହିଁ ବୋଲି କାନ୍ଦୁଛୁ ? ଛି, ଉଠ । ମୁଁ ପଛେ ନେବି ବୋଲି ପକାଇ ଦେଲିନା ? ତୁ ବୁଝୁଣିଆ ନା ବୁଝି ଏତେ କାନ୍ଦିଲୁଣି ?"

ମଣି କିଛି କହିଲା ନାହିଁ — ପରେଶ ହାତରେ ଥିବାଟି ରଖି ମୁଣ୍ଡଟିକୁ ପଛପାଖକୁ ନଇଁଇ ଦେଲା । ପରେଶ ଯେତେ ଦେଖିଲା, ଏ ଅଭିମାନର ସୀମା ଶେଷ କରିବ—ତେଣୁ ଥଟ୍ଟା କରି ତାକୁ ହସେଇବାକୁ ଚେଷ୍ଟା କଲା । ତାକୁ ଧଡ଼ପଡ଼ ହୋଇ ଉଠିବା ପାଇଁ "ଅରେ ଅରେ, ତୋତେ କନ୍ଦାଳିଆ ଧର ଭିତରକୁ ଗଲା ଏ—ଏ—ଓଁ ଓଁ, କାମୁଡ଼ି ଦେବ" ବୋଲି ଗୋଟାଏ ଚିତ୍କାର କଲା, ମାତ୍ର ମଣି ଉଠିଲା ନାହିଁ । ତାର ଦେହକୁ କେତେଥର ଚିମୁଟିଲା, ମାତ୍ର ପଛପାଖେ ଅସ୍ତ୍ରେ ଅସ୍ତ୍ରେ ଅଭିମାନୀର ଦରହସା ମୁହଁ ଫୁଟିଲା । ମୁଣ୍ଡ ଉଠାଇଲା ନାହିଁ । ତେଣୁ ପରେଶ ମୁଣ୍ଡଟିକୁ ଟେକିଦେଇ ଆଣି ଯେତେବେଳେ ଗୋଟିଏ ଚୁମ୍ବନ ଦେଇ ଦେଲା, ଅଭିମାନ ସାଗର ଉଚ୍ଛ୍ୱାସିତ ଶୁଖିଗଲା । ହସି ହସି ଉଠି ମଣି ମାଳଟିକୁ ପୁଣି ଭିଡ଼ି ହାତରେ ଦେଲା ।

ଏଥର ସରୋଜ ମାଳତିକୁ ପାଇ ହସି ହସି କହିଲା—"ବିନୋଦ, ଆମର ଉତ୍କଳୀ କ କାରିଗର ଦେଖନି—ଯଥାର୍ଥ ସୁନ୍ଦର ହୋଇଚି ।" ଆଉ ଆତ୍ମପ୍ରଶଂସା ଶୁଣିବାକୁ ଦାଗିଆ ଅବସର ନ ଦେଇ ଦମ୍ପତ୍ତିଙ୍କୁ ଅଡ଼େଇ ଅଡ଼େଇ ଖାଇବା ଘରକୁ ନେଇଗଲା ।

\+ \+ \+

ଦିନଦିନ ହୋଇ ଏପରିଭାବରେ ସୁଖରେ କୁଟିଭଳ କଟିଗଲା । ଦାଗିଆ ଅଜିରେ ଲୁଦ ଧାଗ୍ରଦେଇ ତାକୁ ଏକୁଟିଆ ପକାଇ ଦେଇ ଉଚନାଟି ଯାକ ଫୁଲକଣ୍ଟି ଯେଝା ସ୍କୁଲ କଲେଜକୁ ଖୁଲିଗଲେ । ଶ୍ୟାମବାବୁଙ୍କର ଯେନପନ କଥା ଅକାର୍ଯ୍ୟନ୍ତ କଷ୍ଟ ଠିକ୍ ହୋଇ ନ ଥିବା । ସେ ପୁଅକୁ ସୁବିଧାରେ ଚଳିବାପାଇଁ ମଣିକୁ ଯତ୍ନରେ ରଖିବାପାଇଁ ନାନା ଉପଦେଶ-ବାଣୀକ ଚିଠି ପତ୍ର ଦେଉଥିଲେ ।

( ୪ )

ଦିନ ଦିନ ହୋଇ ବର୍ଷ ମାସ କ ପରେ କଟିଯାଉଛି ତାହା ମାନବର ଅଗୋଚର । ହୋଇ ଗଲା ଚଲା—ସେ ଉଡ଼ା ପାଉଚି, ମାତ୍ର ତାର କଥା କେହ ଶୁଣିବାକୁ ନାହିଁ । କାଳର ଗତି ରୋକିବାକୁ କାହାର ବଳ କଳନାହିଁ । ଚନ୍ଦ୍ରାଲୋକକୁ ଯିବାକୁ—ମଙ୍ଗଳଗ୍ରହ ଅଭିଯାନ ପାଇଁ ବିଜ୍ଞାନ ପଥ କରି ପାରୁଚ, ମାତ୍ର ଏ ପଦାର୍ଥଟି ମନୁଷ୍ୟର ମନର ଅଗମ୍ୟ ଜନ୍ତୁ ବିଜ୍ଞାନ ଏଥିରେ ପରାସ୍ତ, ମନସ୍ତତ୍ତ୍ୱ ଏଥିରେ ପରାଭୂତ ।

ଏହା ମଧ୍ୟରେ ସୁରବର୍ଣ୍ଣ ସମସ୍ତ ଅନୁକୂଳରେ କଟିଯାଉଚି । ଏହି ସମସ୍ତ କାହାକୁ କପର ସୁଖ ଦେଇଚି ସେ ଜାଣିଥିବ—ମାତ୍ର ସରୋଜ ଆଜି ମଣିକୁ ଦୁଃଖସାଗରରେ ଭସାଇ ଦେଇ ଅଛି । ଅଜ ସରୋଜ ଏମ୍. ଏ.ବି.ଏଲ୍ ପାଶ କରିଅଛି । ମଣି ମାଟ୍ରିକୁଲେଶନ ପାଶ କରି ତାହା

ଜଲା ଧନ୍ଁ ପାଠପଢ଼ା ଛାଡ଼ ଦେଇ ଅଛ୍ନ । ତାଂର ଦଢ଼ାରେ ଆଜ୍ ସ୍ୱଶ ନାହିଁ । ସେ ଅଜ ବାଳିକା ନୁହେଁ—୧୬ ବର୍ଷର ଯୁବତୀ କନ୍ୟା ।

କେହି ଭାବି ନ ଥିଲା ଯେ, ଏତେ ଅଳ୍ପ ସମୟ ମଧ୍ୟରେ ଶ୍ୟାମବାବୁ ମରିଯିବେ । ଏତେବଡ଼ ସୁସ୍ଥ ସବଳ ଶରୀର, ଦୁଇଟା ମାସରେ ମାଟି ହୋଇଯିବ କିଏ ଜାଣେ ? ପେନସନ ପାଇଁ ଅପରି କରି କରି ଥକିଲେ, ସରକାର ଏତେ ଶୀଘ୍ର ତାଙ୍କ ପରି ମାଜଷ୍ଟ୍ରେଟକୁ କାମରୁ ବାହାର କରିବାକୁ ଅନିଚ୍ଛା ପ୍ରକାଶ କରି ତାଙ୍କୁ ଡିଷ୍ଟ୍ରିକ୍ଟ ମାଜଷ୍ଟ୍ରେଟ କରି ପାରିବାର କେତେମାସ ପୂର୍ବରୁ ଗୟାକୁ ପରିବର୍ତ୍ତନ କଲା । ଗୟାରେ ପାଞ୍ଚ ଛଅ ମାସ ରହିବା ପରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ତେଣୁ ସେ ପେନସନ୍ ନ ମାଗି ଏକକାଳୀନ କିଛି ଟଙ୍କା ପାଇଁ ସରକାରରେ ଅଳିକଲେ । ଏଥର ମହାମାନ୍ୟ ସରକାରଙ୍କର ଦୃଷ୍ଟି ପଡ଼ିଲା । ତାଙ୍କୁ ସନ୍ତୁଷ୍ଟ ହୋଇ ସରକାର ବର୍ଷକୁ ଦେଉଥିବା ପୂରା ବେତନ ୧୮୦୦୦ ହିସାବରେ ୧୦ ବର୍ଷକୁ ୧୮୦୦୦୦ ଦେଇ କର୍ମରୁ ବିଦାୟ ଦେଲେ । ତାଙ୍କଭଳି ମାଜିଷ୍ଟ୍ରେଟ ସେତେବେଳେ କେହି ନ ଥିଲା କହିଲେ ଚଳେ । ତାଙ୍କ କର୍ମର ପୁରସ୍କାର ଏହା କିଛି ବେଶୀ ହୋଇ ନ ଥିଲା ।

ଦେଶକୁ ଆସି ଶ୍ୟାମ ବାବୁଙ୍କର ଅସୁଖ ହେଲା । ସରୋଜ ଏଥିରେ ହଜାର ହଜାର ଟଙ୍କା ବ୍ୟୟ କଲା, ମାତ୍ର କାର୍ଯ୍ୟରେ କିଛି ଫଳ ଫଳିଲା ନାହିଁ । ସତୀ ପିତାଙ୍କର ମଇଳା ସଫା କରିବାକୁ ଦିନରାତି ସେବା କରିବାକୁ ଟିକିଏମାତ୍ର ଘୃଣା କଲା ନାହିଁ । ବାହାର କଥା ତ ଛାଡ଼, ସେ ସମସ୍ତଙ୍କୁ ଟେଲିଫଙ୍କରେ ବସାଇ ତାଙ୍କ ପାଖନ୍ତ ପାଖରେ ଅନୁକ୍ଷଣ ଜାଗି ରହିଲା । ହାୟ, ଏତେ ସେବା ଶୁଶ୍ରୂଷା ରୋଗ ମାନିଲା ନାହିଁ । ଶ୍ୟାମ ବାବୁ ଅତ୍ୟନ୍ତ ଦୁର୍ବଳ ହୋଇଗଲେ । ଦିନେ ସରୋଜକୁ ଡାକି କହିଲେ,

"ମର ! ମୋର ଆଉ ବେଶୀ ସମୟ ନାହିଁ—ଜାଣେ । ଅନେକ ଦିନ ଆଗ ମରିଲେ ଯିବା ନେଇ ଚଢ଼ିବ ହୋଇ ଥିଲି । ଲକ୍ଷ ଲକ୍ଷ ଟଙ୍କାର ସମ୍ପତ୍ତି ସଂପତ୍ତିର ଭାର ତୋର ଉପରେ । ମୁଁ ଇଚ୍ଛା କରିଥିଲେ ସମସ୍ତ ଉଡ଼ାଇ ପାରିଥାନ୍ତି—ତେବେ ତୁ ମୋର ପ୍ରାଣର ପ୍ରାଣ ଅଟୁ । ଯାହାଆସ୍ତି ହୋଇ ବ୍ୟୟ କରିଛି—ଅବଶ୍ୟ ଅଯଥା ଭାବରେ ଛଦାମ ବ୍ୟୟ କରି ନାହିଁ—ତୋର ପାଇଁ ଏହା ଜମି ବାଡ଼ି ଟଙ୍କା ପଇସା ସବୁ ରହିଗଲା । ମାତ୍ର ମନେ ରଖିଥିବୁ, ମଣି ତୋର ପ୍ରାଣର ବାଳିକା, ସେପରି ଚିରଦିନ ରହିବ । ତାକୁ ମହତ୍ ସୁପାତ୍ରରେ ଅର୍ପଣ କରିବୁ । ସେ ଅଜ୍ଞ କୁମାରୀ । ତାକୁ ତୋର ସଂପତ୍ତିରୁ କିଛି ଦେବୁ । ଜୀବିତ ଥିବା ଯାଏ ଦାୟିତ୍ୱ ଯେପରି ପରମ ସୁଖରେ କାଳ କାଟେ । ଆଉ ତୋ କଥା ନେଇ ମୋର କୌଣସି ଚିନ୍ତା ନାହିଁ । ତୋର ବୁଦ୍ଧି ଅଛି—ତୁ ବଡ଼—ଉଚ୍ଚ ଶିକ୍ଷିତ । ତୋର ବନ୍ଧୁ ବିନୋଦ ସେ ମଧ୍ୟ ପରମ ହିତକାଂକ୍ଷୀ । ତାର ସଂପଦ ବିପଦରେ ବନ୍ଧୁଭାବ ଯେପରି ରକ୍ଷା କରିବୁ । ମୋର ଜୀବନକୁ ଯେତେଦୂର ଅନୁଭବ କରିଛୁ, ବୁଝିଥିବୁ ମୁଁ କିପରି ଥିଲି । ମୋ ପରି ଯେ ହେବୁ—ତାର କିଛି କଥା ନାହିଁ—ତୁ ମୋ ଠାରୁ ଉନ୍ନତ ମହାପ୍ରାଣ ତେଜସ୍ୱୀ ହେବୁ । ମନେ ରଖିଥିବୁ, ଦେଶର ମଙ୍ଗଳ ପାଇଁ ଯଦି ଆବଶ୍ୟକ ହୁଏ, ତେବେ ପ୍ରାଣ ଦେବା ପାଇଁ କୁଣ୍ଠିତ ହେବୁ ନାହିଁ । ମଣିକୁ ତୋ ହାତରେ ବାନ୍ଧି ଦେଇ ଗଲି !"

•

ସରୋଜ ଯେତେ ପାଠୁଥି ବୁଦ୍ଧିମାନ୍ ହେଲେ ବି ଶିଶୁ ହେବ—ସେ ଗୁଣୁ ଗୁଣୁ କାନ୍ଦି ପକେଇଲା । ଦୂର ଭବିଷ୍ୟତ ତାକୁ ଘୋର ଅନ୍ଧକାର ଦେଖାଗଲା । ହାୟ, ସେ ଏ ବିସ୍ତୃତ ଧନ ମଧ୍ୟରେ ଏକାକୀ କିପରି ଚଳିବ ? ମଣି—ସେ ଯେ ପିଲା । ତାର ଅତି କୋମଳ ହୃଦୟ । ଏ ବିରାଟ ଗୃହ ଶ୍ମଶାନ ହୋଇଯିବ । ପିତା ! ତମେ ଯାଅନା, ସୁକୁମାର ପୁତ୍ରକୁ ଛାଡ଼ି

କେଉଁଠିକି ଯିବ ? ସରୋଜର ଚେତା ବୁଡ଼ିଗଲା । ମାଜ ମଣି ମୁଣ୍ଡରେ ପାଣି ମାର ପୁଣି ଚେତା କଲା । ସରୋଜ ଆଖି ମେଲାଇ ଦେଖିଲା, ସେହି ଅପରୂପ କାନ୍ତି,ଯାହାର ତୁଳନା ସେ କେଉଁଠି ଥରେ ମାତ୍ର ଦେଖି ନାହିଁ । ନିଜକୁ ଧୈର୍ଯ୍ୟବାନ୍ କରି ଭାବିଲା—"ଏଇ ବାଳିକା—ଯେ ମୋତେ ଆଶ୍ରୟ ଦେଇଛି, ମୁଁ ଏପରି ହୋଇ ଯାଉଛି ।" ମାତ୍ର କଣ ହେବ ସେ ତାର ବାପାଙ୍କ କଥା ଭାବିବା ମାତ୍ରେ କଣ ହୋଇ ଯାଉଥିଲା ।

ଚନ୍ଦ୍ରପକ୍ଷ ହୁଏ ସାତଟା ସମୟରେ ହଠାତ୍ ଟିକିଏ ମେଘ ଝୁପୁ ଝୁପୁ କରିଦେଲା । ଦାସିଆ ଅନୁଭବୀ, ତାର ପ୍ରାଣରେ ବଡ଼ ଭୟ ଆସିଲା । ଶ୍ୟାମବାବୁଙ୍କର ଙ୍କୀ ଅସ୍ତ୍ରେ କ୍ଲେଦ ହୋଇ ଆସିଲା । ସରୋଜ ଆଉ ମଣି ହାତକୁ କେଜାଣି କାହିଁକି ସେ ଏକାଠି ଚିପି ଧରି "ମଣି—ସରୋଜ—ସରୋଜ !" କହି ଆଖି ବୁଜିଦେଲେ । ସରୋଜ ଆଉ ମଣି ଦାସିଆର ଶିକ୍ଷା ଅନୁସାରେ ଟିକିଏ ଟିକିଏ ଗଙ୍ଗାପାଣି ପାଟିରେ ଦେଇ ଦେଲେ । ମୃତ ଘରର ଗୃହକାର ସ୍ୱୀକାର ବନ୍ଧୁ ବାନ୍ଧବ ହୋଇ କମ୍ ନ ଥିଲେ—ସମସ୍ତେ ହାଁ ହାଁ କରି ଚାଲିଗଲେ, କେବଳ ପାଦ ଧରି କାନ୍ଦିବାକୁ ରହିଲେ ତିନିଜଣ—ସେ ସରୋଜ-ମଣି-ଦାସିଆ ।

ଯେତେ କାନ୍ଦିଲେ କଣ ହେବ—ଆଉ ବାପା କେଉଁଠୁ ଆସିବେ ? କାନ୍ଦଣା ଭିତରେ ଦାଇର ଠାକୁରାଣୀଙ୍କ ପାଟି ଶୁଭିଲା । ସେ ବିପଦ ଆପଦରେ ବଡ଼ ଉପୁଥରଲୋକ । ଯେମିତି ଦୁ' ପଇସା ପାଆନ୍ତି, ସେମିତି କାମ କରନ୍ତି । ଦୁଆରେ ମୁହଁରେ ଠୁଙ୍କାହୋଇ ଗୋଟାଏ ଧମକ ଦେଲେ—ଅହହହ—ସରୋଜ—ସରୋଜ—ଏମିତି ହେଲେ ଚଳିବ ? ଉଠ ଉଠ ଅପ । କେତେବେଳ ହେଲାଣି । ମାଇକିନା ଭଲ ଗୁଡ଼ାଏ କାନ୍ଦୁଛ କଣ ? କଲ୍ଲ ହୋଇଲେ କିଏ ମରି,ତାକୁ କଏ ଅଟକିବ ବାପା ? ଅପ ଭାଇ !

ସରୋଜ ଏଥର ମଣିକୁ ସାଙ୍ଗରେ ଧରି ଅନ୍ୟ ଘରକୁ ଗଲା ? ଦାସିଆ ସାଇ ବ୍ରାହ୍ମଣଙ୍କ ଦ୍ୱାରା ସରୋଜକୁ କୋଡ଼ିଏ ମୁଣ୍ଡ ଅ ମନାଇ କାମ ଠିକ କରି ନେଲା । ଯଥାସମୟ ଶବସଂସ୍କାର ହେଲା । ସରୋଜ ପିତାଙ୍କ ମୁଖରେ ଅଗ୍ନି ଦେଇ ଗୃହକୁ ଫେରିଲା । ହଜାର ହଜାର ଟଙ୍କା ପାଣି ଛ ପକାଇଲା ପରି ଦେଇ ସରୋଜ ଯେପରି ଶ୍ରାଦ୍ଧ କଲା, ତାହା ଅଖିରେ ସେଠା ଲୋକ କେବେ ଦେଖି ନ ଥିଲେ ।

ସେ ଯାହାହେଉ, ତାର ବାପା ଦିନ କାଙ୍ଗାଳ ଭୋଜନର ବ୍ୟବସ୍ଥା ହୋଇଥିଲା ! ହଜାର ହଜାର କାଙ୍ଗାଳି ଜମା ହୋଇଥିଲେ । ସେମାନଙ୍କୁ ପ୍ରଥମେ ଖଣ୍ଡେ ଖଣ୍ଡେ ଖଦଡ଼ ଲୁଗା ଦିଆ ଯାଉଥିଲା । ଖଣ୍ଡିଏ ଲେଖାଏଁ ପାଇ ହସ ମୁଖରେ ଅନେକେ ଚାଲିଯାଉଥିଲେ, ମାତ୍ର ଛିନ୍ନବସ୍ତ୍ର ପରିହିତ ବିକଳାଙ୍ଗ ପଲିତମୁଣ୍ଡ ପ୍ରାଣହୀନ ଅସ୍ଥିଚର୍ମସାର ଲୋକଟିଏ . ବୃଦ୍ଧ ଖଣ୍ଡିଏ ନେଲେହେଁ ଏ ପାଖ ସେ ପାଖ ହେଉଥିଲା । ଆଗେ ନେଇ, ଲୁଗା ଖଣ୍ଡିକ ସେ ଛିଡ଼ା କନାବୁଜୁଳା ଭିତରେ ଯତ୍ନରେ ପୂରାଇ ପୁଣି ଅଗ୍ରଭାଗରେ ଯେତେବେଳେ ଆସି ମାଗିଲା, ସେତେବେଳେ ସେ ଧରା ପଡ଼ିଗଲା । ଏ ବିରାଟ କାମରେ ବିନୋଦ ଯଦି ଯୋଗ ଦେଇ ନ ଥାନ୍ତା, ତେବେ ଅବିବେକର ବଥାରେ ଅଜସ୍ର ଟଙ୍କା ବ୍ୟୟ ହୋଇ ଯାଇଥାନ୍ତା । ମାତ୍ର ଅର୍ଥନୀତିଜ୍ଞ ବିନୋଦର ଯତ୍ନରୁ କାମ ଅତି ସୁନ୍ଦର ଭାବରେ ଚାଲିଥିଲା । ଠିକ ଲୁଗା ଦେଉଛନ୍ତି ବିନୋଦ । ଏପରି କିଏ ଚାଲାକ ତାର ଆଖି ଆଗରେ ଜଣେ ଦୁଇଥର ନେଇପାରିବ ? ମିଛରେ ଏତେ ବର୍ଷ ସେ ଅର୍ଥନୀତି ଅଧ୍ୟୟନ କରିଛି । ଲୋକଟାକୁ ଧରି ଦେଇ ତାକୁ ବାହାର କରି ଦେବାକୁ ବିନୋଦ ହୁକୁମ ଦେଇଛନ୍ତି—ଏହା ସମ୍ମୁଖରେ ହଠାତ୍ ଧୀର ପଦକ୍ଷେପରେ କେମାନଣି ହେଞ୍ଚି ଯାଇ କହିଲା—'ଭାଇ ! ଭାଇ ! ଦଅ ଦଅ—ଅଉ ଖଣ୍ଡେ ତାକୁ ଦଅ ।'

ବିନୋଦ ହସିଦେଇ କହିଲା "ବାଃ, ବେଶ କପାଳଥ—ବୁଢ଼ା କେବେ—କେ—"ଏହାକହି ଅଙ୍ଗୁଳିରେ ଦେଇ ଦେଲା—ବୁଢ଼ା ଅଖିରୁ ଲୋତକଧାର ବହିଗଲା । ଲୁଗାଖଣ୍ଡି ପାଇ ଆନନ୍ଦରେ ବୁଲି ଯାଉଥିଲା । ରାଜ ମଣିର ଆଦେଶ ଅନୁସାରେ ଗୋଟାଏ ଲୋକ ସେହି ବୁଢ଼ାହିକୁ ଆଣି ତଳେ ଚଉଣ୍ତାରେ ବସାଇ କହିଲା—"ବୁଢ଼ା ! ତୁ ଏଠି ବହିଥା । ତୋତେ ମଣି ମାଆନ୍ତାଣୀ ଅନେକ କଥା ଦେବେ । ବୁଢ଼ା ସେ ଅଜି ଦୁଇଟିକୁ ଭାବିଲା—ମାଁଙ୍କ କଣ୍ଠ ଠିକ୍ କରିପାରିଲା ନାହିଁ ।

ମଣି ଲୁଗାବଣ୍ଟା ବେଳେ ସମସ୍ତ ରହସ୍ୟ ଦେଖୁଥିଲା । ଆହା, ଦୁଃଖୀ ମଣିଙ୍କୁ କଣ ନ କରେ ? ସେ ଯେତେବେଳେ ଗଭୀର ଦୁଃଖ ମଧ୍ୟରେ ଥିଲା, ତାର ଅବସ୍ଥା କଣ ଥିଲା । ଏପରି ଭାବୁତ, ଯେଉଁ ବୁଢ଼ାକୁ ସେ ଲୁଗା ଦୁଇଥର ମାରିବାର ଦେଖିଲା, ତାକୁ ସ୍ପଷ୍ଟ ଚିହ୍ନିପାରିଲା । ସେ ତାଙ୍କ ଗାଁର ପ୍ରଧାନ ଛଡ଼ା ଆଉ କେହି ନୁହେଁ । ସେଥିପାଇଁ ତାଠୁ ତାର ଦୁଃଖକାହାଣୀ ଶୁଣିବ ବୋଲି ତାକୁ ରଖାଇଲା ।

ମଣି ପଚାରିଲା—"ଅଜ୍ଞା, ବୁଢ଼ା, ତମର କଣ କେହି ନାହିଁ ?

"ନାଁ, ମା, ଆଉ କେହି ନାହିଁ—ମୁଁ ଏକା ।"

"ଏପରି ଦଶା କପରି ଘଟିଲା ବୁଢ଼ା !"

"ମା, କଣ କହିବି ସେ କଥା ! ସେ ମୋର ନିଜ ଅର୍ଜିତ ଫଳ । ଯେପରି ମଞ୍ଜି ଯେ ପୋତିବ, ସେ ତ ସେପରି ଫଳ ପାଇବ । ଆଉ ଭଲ ଲୋଡ଼ିଲେ କାହୁଁ ପାଇବ ? ଶୈଶବାପି ଦିନ ଘରପୋଡ଼ି ପ୍ରିୟା କଥାରେ କହନ୍ତି, ମାତ୍ର ମୋ ଜୀବନରେ ମେର ପାପରୁ ତାହା ଘଟିଲା । ସେ ୮୦ ବର୍ଷର ବୁଢ଼ା ୧୦ ବର୍ଷର ପିଲା, ତାଙ୍କର ଜଣ୍ଢାଇ କୁଆଡେ ଯିବ ?"

"ଅଜ୍ଞା, ତମେ ଭଲଙ୍କର କଣ କଥାଟା କହ ?"

କଣ କଥା କହିବି ମା, ହୃଦ ପୋଡ଼ି ଯାଉଛି—ମୋ ଘରୁ ଝିଅଟା ଆସି ପୁଅ ଗ୍ରେଫ କରି ନେଲା—ମୁଁ ବନ୍ଦୀ କଲି ନେଇ ଦୁଃଖିନୀ ଲୋକର ୮୦ ବର୍ଷର ବୁଢ଼ୀ ଆଉ ୧୦ ବର୍ଷର ବାଲକାକୁ । ଶେଷରେ ମୋର ଜେଲ ହେଲା । ସେପରେ ଧର୍ମିଙ୍କ ହାକିମ ଥିଲେ ବୋଲି ଜୀବନଟା ରକ୍ଷା ପାଇଲା, ନଚେତ୍ ଏ ପାପୀର ଦୋଷ କଟି ନ ଥାନ୍ତା । ଦୁଇବର୍ଷ ପରେ ଜେଲରୁ ମୁକ୍ତିଲି ଦେଖିଲି ଯେ, ଘର ଦୁଆର ଜମି ବାଡ଼ି ସବୁ ପୁଅ ମକ୍ଷିଣି ବାହାର କରିଦେଇ କୁଆଡ଼େ ଯାଇଛନ୍ତି । ଶୁଣିଲି ଯେତେ ଥିଲେ ସେମାନେ ହଇଜାରେ ସର୍ବନାଶ ହୋଇଛନ୍ତି । ମୋ ଘରୁ ଯେ କେବଳ ମରିଛନ୍ତି ତା ମଧ୍ୟ ନୁହେଁ, ଗାଁ ଗୋଟିକ ପଦା ହୋଇ ଯାଇଛି, ଯେମିତି ପାପ ସେମିତି ଶାସ୍ତି । ମା, ଆଉ କଣ କହିବି ? ତା ପରେ ନାନା ଉପାୟ ଖୋଜିଲି—ପେଟ ଖାଇ ଚଳିବାକୁ । ମାଏ କେତେଦିନ ପରେ ଗୋଡ଼ରେ ବାତ ଦେଖାଗଲା । ଆସି ହତାଶ ଭାବରେ ଡାକ୍ତରଖାନାରେ ପଡ଼ିଲି । ଟିକିଏ ଭଲ ହୋଇଛି ସେଦିନୁଁ ଭିକ୍ଷା କରି ବୁଲୁଛି, ଆଉ କଣ କହିବି ମା, ମୋର ଏଥିପାଇଁ ଦୁଃଖ ନାହିଁ ।

ମଣିର କଳା ଡୋଳାରୁ ଲୁହ ବୋହି ଗଲା । ତାଙ୍କ ହୃଦୟ ଯେତେ ଶକ୍ତ ହେଉ, ଯାହାହେଉ, ସେ କେବେ ସହି ପାରୁ ନାହିଁ ।

ଅଶ୍ରୁମଖା ମୁଖରେ ବୁଢ଼ାକୁ କହିଲି, "ଆହା ତମେ ସେଇ ଆମର ପଧାନ, ଏତେ ବଡ ଧନୀ ଥିଲ, ଏପରି ଅବସ୍ଥାରେ ଅଛ ? ମୋତେ ଚିହ୍ନି ପାରୁ ନାହଁ ? ମୁଁ ସେଇ ତମର ଗୋବର ଗୋଟେଇ— ।

ବୁଢ଼ାକୁ ସପନ ପରି ମନେ ହେଲା । ସେ ଚମକିଲା ନାହିଁ, କାରଣ ସହି ସହି ଶୁଣି ଶୁଣି ଦେଖି ଦେଖି ସେ ପଥର ହୋଇ ଯାଇ ଥିଲା । ସେଥି ପାଇଁ ସୁଖ କଣ ଦୁଃଖ କଣ ବାହିଁବେ ସେ ତମକୁ ନ ଥିଲା । ପ୍ରଥମେ ବାଳିକାକୁ ଅନାଇ ଦେଖିଲା । କେବଳ ସେହି ସୁନ୍ଦର ନାକଟି

ଅନ୍ଧ ଅଖି ବୁଜିଛି ବୁଢ଼ା ସେ ମଣି ବହୁତ କେତେ ମିଶାଇଲା, ମାତ୍ର ମିଶାଇ ପାରିଲା ନାହିଁ ।" ସେହି ଗୋବରଗୋଟେଇର ମଣି ସ୍ପର୍ଶରେ ଅପ୍ସରା, ତାକୁ ଅପୂର୍ବ ମନେ ହେଲା । ତା ମୁଣ୍ଡ ତଳକୁ ନଇଁଗଲା । ଦେଖିଲା, ଦେହରେ ଗହଣାର ସୀମା ନାହିଁ—ହାତରେ ଚୁଡ଼ି ବାହୁପଟ, କାନରେ ଗୋଟିଏ ଅତି ସୁନ୍ଦର କାଚ କଟା ଫୁଲ, ବେକରେ ଗୋଟିଏ ବହୁମୂଲ୍ୟ ହାର । ବାଳ ଗୁଡ଼ିକ ତରଙ୍ଗାୟିତ । ତାହା ଫିଟି ଯାଇଛି, ଗୋଟିଏ ବାଇଗଣି ରଙ୍ଗର ଶାଢ଼ୀ, ତାର ଧଡ଼ିରେ ସବୁ ସୁନାର ଫୁଲ ଫୁଟିଛି, ମୁଣ୍ଡରେ ଫୁଲରେ ଛଅର ପରି କଣ ଗୋଟିଏ ଦ୍ୱିତୀୟା ଚନ୍ଦ୍ରକଳା ଗହଣା, ଦେହରେ ସେ ଇସ୍କୁଲିଆ ପିଲାଙ୍କ ପରି କଣ ଗୋଟିଏ ମିର୍ଜାଇ । ସେ ଚେମଟା ଶୁଖିଲା ଗାଲ ଆଉ ନାହିଁ, ସେ କଙ୍କିପରି ଦେହ ଆଉ ନାହିଁ; ଆଉ ସେ ସୁନ୍ଦର ବୃଜର ବଣୀ । କେତେ ଭଦ୍ରଲୋକ ଦୁଆରେ ସେ ଭିକ ମାଗିଛି, ସେ କେତେ ଝିଅ ଦେଖିଛି, ମାତ୍ର ଏପରି ଅଖି ସାଙ୍ଗକୁ ନାକ, ନାକ ସାଙ୍ଗକୁ ମୁଣ୍ଡ ପୁଣି ବାଳ, ସବୁ ଅଂଶ ସମାନ ସୁନ୍ଦର କରି ଝିଅ ସେ କେଉଁଠି ଦେଖି ନାହିଁ । ଓଡ଼ିଆ ମାଈ—ପଶ୍ଚିମା ଗାଈ, ବଙ୍ଗାଳି କେଶ—ତେଲଙ୍ଗା ବେଶ, କଥାଟା ସତ । ପୁଣି ଦସ୍ତାର ଜୀବନ୍ତ ବିଗ୍ରହ ଏପରି କେଉଁଠି ତା ଭାଗ୍ୟକୁ ଯୁଟି ନ ଥିଲା ।

"ମା ମା, ତୁ ସତେ ଜେମାମଣି ! କ୍ଷମା କର ମା, ଏ ବୃଦ୍ଧ ତୋତେ କେତେ ଦଣ୍ଡ ଦେଇଛି—କେତେ ହଇହଟାରେ ପକାଇଛି; ଆଜି ତାର ଏ ଦୁର୍ଦ୍ଦଶା ଦେଖି ଭୁଲିଯା । ତାକୁ କ୍ଷମା ଦେ—ନଚେତ୍ ସେ ପୁଣି ପର ଜନ୍ମରେ ଗଭୀର ଦୁଃଖ ଭୋଗ କରିବ ।" ବୁଢା କହୁ କହୁ ରଡ଼ି ଛାଡ଼ିଲା । ମଣି ବୁଢ଼ାକୁ ଟେକିଧରି ବହୁତ ଆଶ୍ୱାସନା ଦେଲା । ଆଉ ଭାଇଙ୍କୁ କହି ତାକୁ ଖଣ୍ଡିଏ ବଖରା ଦେଇ ଜୀବ ଥିବାଯାଏ ଖାଇବା ପିଇବାକୁ ଦେଇ ରଖିଲା । ବୁଢ଼ା ବେଶୀଦିନ ବଞ୍ଚିଲା ନାହିଁ । ପ୍ରାୟ ୬।୭ ମାସ ପରେ ସଂସାର ଛାଡ଼ିଲା । ମଣି ତାପାଇଁ ଅଜସ୍ର ଟଙ୍କା ବ୍ୟୟ କରି ତାର

ମୁକ୍ତିପଥ ପ୍ରସ୍ତୁତ କରି ଦେଲା । ଅର୍ଥଲୋଭୀ ହରିଚନ୍ଦନା ବ୍ରାହ୍ମଣଗଣ ଗୁରୁ ପଇସା ଠେଇଁ ଦଅଣା ପାଇ ସୁଖୀ ହେଲେ ।

ପିତାଙ୍କର ଶୁଦ୍ଧି ଶ୍ରାଦ୍ଧ ସରିଗଲା ପରେ ବନ୍ଧୁ ବାନ୍ଧବ ଯେ ଯୁଆଡେ ଗଲେ; ବାକି ରହିଲେ ମଣି, ସରୋଜ, ଦାସିଆ, ଆଉ ଅସ୍ଥାୟୀ ଚାକରାଣୀ ଓ ପୂଜାରୀ ! ଏତେ ବଡ଼ ଘଟଣା ତାଙ୍କୁ ମାଡ଼ି ମାଡ଼ି ପଡ଼ିଲା । ତାହା ନଥିଲା ବେଳେ ସେମାନେ ଏପରି ଭାବରେ ରହୁ ଥିଲେହେଁ ଆଜି କେଜାଣି କାହିଁକି ତାଙ୍କୁ ରହିବାକୁ ଭୟ ଲାଗିଲା ।

ଯଥା ତଥା ଭାବରେ ମାସେ ଦ ମାସେ ଯେ ତା ମୁହଁକୁ ଚାହିଁ, ଏ ତା ମୁହଁକୁ ଚାହିଁ ଦିନ କଟାଇଲେ । ମାତ୍ର ମହାକାଳ ବିପଦ, ମଣି ସରୋଜର ଶିରୀ ସହି ପାରିଲା ନାହିଁ । ଯୋଉ ବୁଢା ଜମକପଟା ଚାକରଟି ଯୋଗେ ସେମାନେ ସୁଖରେ ଅଚିନ୍ତାରେ କାଳ କଟାଉ ଥିଲେ, ଦିନେ ସେ ତା ସାଆନ୍ତଙ୍କୁ ଚିନ୍ତା କରି କରି ଆଖି ବୁଜି ଦେଲା । ଏପରି ଠକ ମଙ୍କ ହୋଇ ଦାସିଆ ମରିଯିବ କିଏ ଜାଣିଚ ? ସରୋଜ ଏଥର ଚିନ୍ତାରେ ପଡ଼ି ଗଲା । କଣ କରିବ କିଛି ଉପାୟ ପାଇଲା ନାହିଁ ।

ଏହି ସମୟରେ ତାର ବିବାହ ପାଇଁ କେତେ ଆଡୁ କେତେ ଲୋକ ନିଜ ନିଜ କନ୍ୟାମାନଙ୍କର ଗୁଣଗ୍ରାମ ନେଇ ତା ନିକଟରେ ହାଜର ହେବାକୁ ଲାଗିଲେ । ମାତ୍ର କେଜାଣି କାହିଁକି ତାର ପ୍ରୀତିକୁ କେହି ଜଣେ ମାତ୍ର ପାଇଲେ ନାହିଁ । ୧୦ ଲକ୍ଷ ଟଙ୍କା ସମ୍ପତ୍ତିର ମାଲିକ ଏଣେ ସୁଦର୍ଶନ ସୁଠାମ ସୁନ୍ଦର ଏପରି ବୁଦ୍ଧିମାନ୍ ଶିକ୍ଷିତ ଯେ, ତାର ସମକକ୍ଷ ଜଣେ ମାତ୍ର ପିଲା ଦେଖିବାକୁ ମିଳିଲା । ଏପରି ନହରୁ ବାଳକକୁ କନ୍ୟା ଦେବାକୁ କିଏ ଇଚ୍ଛା ନ କରିବ ? ବିଶେଷରେ 'ଧନେନ ସର୍ବେ ବଶାଃ ।'

ମଣିକୁ ସଦ୍‌ବଂଶରେ ସତ୍‌ପାତ୍ରରେ ବିବାହ ନ ହେଲେ ସେ କେବେ ବିବାହ କରିବ ନାହିଁ—ତାର ଏହି ପ୍ରତିଜ୍ଞା । ବାପା ମୃତ୍ୟୁପୂର୍ବରୁ ତାହାକୁ ଯେଉଁ ଆଦେଶ ଦେଇଅଛନ୍ତି, ସେ ତାହା ବର୍ଣ୍ଣେ ବର୍ଣ୍ଣେ ପାଳନ କରିବ । ସେଥିପାଇଁ କେତେ ଲୋକ ଆସନ୍ତି—କେତେ ଲୋକ ଯାଆନ୍ତି; ମାତ୍ର ସେ କାହାର କଥା ପଦେସୁଦ୍ଧା କାନ ଡେରି ଶୁଣେ ନାହିଁ । ଏଣେ ଚତୁର୍ଦ୍ଦିଗରେ ଆଖି ବୁଲାଉ ଥାଏ ।

ଏହି ମୁନିମାନସବିମୋହିନୀ ମେନକା ପାଇଁ ବର କେଉଁଠି ? ଆଜି ତାଙ୍କ ରାଜ୍ୟର କ୍ଷତ୍ରିୟ ସମାଜରେ ସେପରି ଗୁଣବନ୍ତ କିଏ ? ଚତୁର୍ଦ୍ଦିଗ ଦେଖିଲା । ଯଦି ସଦ୍‌ବଂଶ ମିଳିଲା, ତେବେ ଶିକ୍ଷା ବର୍ଣ୍ଣ ନାସ୍ତି ଦେଖିଲା, ଯଦି ଅଳ୍ପଶିକ୍ଷା ଦେଖିଲା ତେବେ ସେ ତିମିରବିଳାପୀ ବୋଲି ମନେହେଲା । ଆଜିକାଲି ତ କ୍ଷତ୍ରିୟ ସମାଜର ସେ ତେଜ ଗୌରବ ନାହିଁ, ଅଛି ସାମନ୍ତ-ନାମଧାରୀ ଶୀର୍ଣ୍ଣ ଦେହ—ଅପୁ, ଗଞ୍ଜେଇ ନିଶା—ବ୍ୟଭିଚାରରେ—ସର୍ବନାଶ । ଶିକ୍ଷା ନାହିଁ—ଦୀକ୍ଷା ନାହିଁ—ଅଛି ଅଭିମାନର ତୁଙ୍ଗ ହିମାଳୟ । ରାଜପ୍ରଦତ୍ତ ବ୍ରହ୍ମୋତ୍ତର ଲଖରାଜ ଖଣ୍ଡିମାନ ବିକି ବିକି ସର୍ବନାଶ ହେଲେଣି, ମୁଣ୍ଡର କୁଞ୍ଚିତ ଫିରେଇଷ୍ଟପାଇଁ ଅଧଲିଠାକର ଶିଶିତେଲ ମିଳୁ ନାହିଁ । ତେବେ ମଧ୍ୟ ସେତିକ ସାଆନ୍ତମାନେ ବଞ୍ଚାଇ ରଖିଛନ୍ତି—ପାଣି ମୁଣ୍ଡରେ ମାଖି ଛନବେଳ ଫିରେଇଡିମାନ ସଜାଉଛନ୍ତି—ଦାଣ୍ଡରେ କିଏ କାଳେ ଉପହାସ କରିଦେବ ? ପାଚିଲା ଗାମୁଛାଟି ପାନବଟାଟି ଘରେ ଖାଇବାକୁ ନ ଥିଲେହେଁ ଧରିବାକୁ ଭୁଲନାହାନ୍ତି । ନିଶ ଦୁଇଟାକୁ ସେତେ କାଟ ଛାଟ କଲେ କଣ ହେବ—ତାହା ଶୁଷ୍କ ମୁଖରେ ବିଲେଇ ନିଶଭଳି କଦର୍ଯ୍ୟ ଦେଖା ଯାଉଅଛି । ହାୟ, ଦିନେ ଏହି ଜାତି ବୀରତ୍ୱର ପୁଲକମୟ ପ୍ରକର୍ଷରେ ଗଗନ ପବନ ପ୍ରତିଧ୍ୱନିତ କରୁଥିଲେ—ଦିନେ ଏମାନଙ୍କର ଶକ୍ତି ବଳରେ ରାଜାର ଶ୍ରୀସମ୍ପଦ କୁବେରଭଣ୍ଡାରପରି ରହିଥିଲା—ଆଜି ଏମାନେ ଭୀରୁ—କାପୁରୁଷ—ହୀନ—ବର୍ବର; ଘରେ ଖାଇବାକୁ ନାହିଁ—

ଧନସିଅଁ ଲୁଗାଖଣ୍ଡିକ ଚନ୍ଦନ ଗୁଳକଣକର ତା ଉପରେ ଚୁଡ଼ା ପଞ୍ଜାବଣ୍ଡି ଗଳାଇ ସାମନ୍ତ ସୌଜନ୍ୟ ରକ୍ଷା କରୁଚନ୍ତି । ଏ ଭଦ୍ରତା ରକ୍ଷାରେ ସେ ସାମନ୍ତ ବୋଲି ପରିଚୟ ପାଇବେ ନାହିଁ—ଯଦି ତାଙ୍କଠି ଅଦମ୍ୟ ଶକ୍ତିର ତରଙ୍ଗ ଥାନ୍ତା—ଖରୁ ସାହସ ଥାନ୍ତା—ବଳବାନ୍ ଥାଆନ୍ତେ ତେବେ ଏ ବେଶ କୌଣସି ଅବଶ୍ୟକରେ ଆସନ୍ତା ନାହିଁ । ବଳାସହିଁ ତୁମ ମୃତ୍ୟୁର ପ୍ରଧାନ ସହଚର ।

ସରୋଜ ସାରାରାଜ୍ୟ ବୁଲିଲା, ଜଣେ ଦେଶର ସାମନ୍ତ ଶ୍ରେଣୀରେ ସୁଯୋଗ ପାଇଲା ନାହିଁ । ତେବେ ସେଥିପାଇଁ ଚେଷ୍ଟାରୁ ବିରତ ହେଲା ନାହିଁ । ତାର ଅଦମ୍ୟ ଚକ୍ଷୁ ଚତୁର୍ଦ୍ଦିଗକୁ ଥିଲା । ସୁଯୋଗ ମିଳିଲେ ସେ ତାର ସୁବର୍ଣ୍ଣ ପ୍ରତିମାକୁ ସେପରି ଗୋଟାଏ ମୂର୍ଖ ଗୋଲୁଆ ହାତରେ ଦେଇ ପାରିବ ନାହିଁ । ଯାହା ସେ ଜାଣିଛି ବନ୍ଧନ, ନାନା ସମସ୍ୟାରେ ସେ ହୃଦୟରେ ନାନା ବିଷୟ ଚିନ୍ତା କରେ । ଜାତିର ବନ୍ଧନକୁ ଛିଣ୍ଡାଇ ଦେବାପାଇଁ ତାର୍ ପିଲାଦିନୁଁ ଇଚ୍ଛା । ସେଥିପାଇଁ ସେ କେତେ ପ୍ରବନ୍ଧ ଲେଖିଛି—କେତେ ଡିବେଟିଙ୍ଗ୍ କ୍ଲବରେ ବକ୍ତୃତା ଦେଇଛି । ଆଜି ନିଜେ ପରୀକ୍ଷା ଦେବ । କଥାରେ କୌଣସି କାର୍ଯ୍ୟ ହୁଏ ନାହିଁ । କାର୍ଯ୍ୟହିଁ ଆବଶ୍ୟକ । କବିଙ୍କ ଲେଖାରେ—“ନାହିଁ କର୍ମବୀର ଜଣେ ବାକ୍ୟବୀର ସକଳେ” । ସରୋଜ ଭାବିଲା ସେ କଣ ବାକ୍ୟବୀର ହେବ ? କଲେଜରେ ଇସ୍କୁଲରେ ପଢ଼ିଲା-ବେଳେ ତାକୁ ସବୁ ସାଥୀ ପିଲାଏ କହନ୍ତି—“ହଁ, ଏ ବାଚାଳେଙ୍କର ପୁଅ ବୋଲି ବାଚୁଲ ବାଜୁ ନାହିଁ, କଥା କହୁଛୁ; ମାତ୍ର କାମରେ ଦେଖିବା ନାହିଁ ? ଆରେ ବାପା—ଜାତି ଧର୍ମ କଥା ଛାଡ଼—ଏପରି ଦିନ ବି ତୋର ଆସିବ ଯେ, ଅମେ ଯଦି ଭିକାରୀ ହୋଇ ତୋ' ଦୁଆରେ ହାଜର ହେଉ, ତେବେ ତୁ ମାଡ଼ ମାରି ଘଉଡ଼େଇବୁ । ସବୁ ଠାକୁରାଣୀ ଯାହା କହିବେ, ତୋର ଗୃହ ନ ଥିବ ।”

ସେ ତାହା ଶୁଣି ହସୁଥିଲା । ନାଁ, ତାହାର ସରଳ ଜୀବନରେ ସେ ଏପରି ବ୍ୟବହାର କରିପାରିବ ନାହିଁ । ସେ କେଉଁ ବାପର ପୁଅ ? ତାର ଗର୍ବ ଅପରିମିତ ! ପିତାଙ୍କର ଗୌରବ ରକ୍ଷା କରିବାପାଇଁ ସେ ପ୍ରାଣ ପର୍ଯ୍ୟନ୍ତ ବଳିଦେବ ଇଚ୍ଛା କଲା ।

ସତ୍ୟେନ ଅକ ପିତାଙ୍କର କୁପୁତ୍ର ନୁହେଁ । ପିତାଙ୍କପରି ସେ ତ ବସ୍ତ୍ର ଦାନ କରିଚି ଏବଂ ମଧ୍ୟ କରୁଚି । ତାର ପିତାଙ୍କ ନାମରେ ସ୍କୁଲ—ମାତାଙ୍କ ନାମରେ ସ୍କୁଲ, ଏ ସବୁ ତ ତାରି କୀର୍ତ୍ତି । ଆଗେ ତ ଏଠାରେ ଉଚ୍ଚ ଶିକ୍ଷାର କୌଣସି ସୁବିଧା ନ ଥିଲା । ପୁଣି ତ ବହୁତ ଟଙ୍କା ଦେଇ ଦୁଃଖୀ ରଙ୍କୀଙ୍କପାଇଁ ଧର୍ମମନ୍ଦିର କରିଦେଇଚି । ସେମାନେ ପେଟମନ୍ତ ଖାଇବେ—କାମ କରିବେ । ଆଉ କଣ କରନ୍ତା ? ମଣିର ମାଆପାଇଁ ତ ପ୍ରତିବର୍ଷ ଖବରରେ ସେବାଛତ୍ର ଦେଉଚି । ଦାଦିଆ ତାର ଏତେଗୁଡ଼ାଏ ଟଙ୍କା ଦେଇଯାଇଥିଲା, ତାହା ନାମରେ ତ ଗୋଟିଏ ପାନ୍ଥ ନିବାସ କରିଦେଇଚି—ଅଉ କଣ କରନ୍ତା ? ତାର ସାଙ୍ଗସାଥୀମାନଙ୍କୁ ତ ସେ କେବେ ଅବହେଳା କରି ନାହିଁ, ବରଂ ଯେ ତାର ଦ୍ୱାରକୁ ଆସିଚନ୍ତି, ତାଙ୍କୁ ବସ୍ତ୍ର ଧନ ପଦାର୍ଥ ଦେଇ ମହାନନ୍ଦରେ ବିଦାୟ ଦେଇଚି ।

ତାର ସମସ୍ତରେ ସୁଖ—ମାତ୍ର ଗୋଟିଏ କଥାରେ ତାର ଦୁଃଖ ; ସେ ମଣିପାଇଁ କିଛି କରି ନାହିଁ ।

   

ଅକ ମଣି ସତ୍ୟେନ ମଧ୍ୟରେ ସେ ପିଲାଖେଳ ନାହିଁ—ସେ ଅଭିମାନ ଅଭିରୁଷା ନାହିଁ । ଅଛି—ଦିବ୍ୟ ସ୍ନେହ ଏବଂ ପବିତ୍ର ସମ୍ବନ୍ଧ । ସତ୍ୟେନ ପିତାଙ୍କର ପରଲୋକ କଥା ଶୁଣି ଭଉଣୀପାଇଁ ସାହି ରାଜ୍ୟ ଖୋଜିଚି ସତ୍‌ପାତ୍ର—ମାତ୍ର ମଣିର ସେ ଲୋଭ ନାହିଁ । ବାବା ଯେ ସ୍ୱର୍ଗ

ପୂର୍ବେ ସେହି ହାତଟିକୁ ମଣି ଏହି ଅଭାଗୀ ହାତରେ ଯୋଡ଼ିଦେଲା, ତାହାର ଅର୍ଥ କଣ ? ମଣି ସବୁ ବୁଝିଛି—ମାତ୍ର ସରୋଜ କିଛି ବୁଝି ନାହିଁ ।

ମଣି ଦିନ ଯାକ ଏପାଖ ସେ ପାଖ ହେଉଥାଏ । ସରୋଜ ଦଣ୍ଡେ ଘରେ ନ ଥିଲେ ତାର ପ୍ରାଣ ହୁହୁ କରେ । ତାର ଆକର୍ଣ୍ଣ ବିସ୍ତାର ଚକ୍ଷୁ ଦିଓଟି ଛଳ ଛଳ ହୁଏ । ମାତ୍ର ସରୋଜକୁ ଦେଖି ଦେବା କ୍ଷଣେ ତାର ମନ କେଜାଣି କାହିଁକି କି ଅଜଣା ପୁଲକରେ ପୁଲକିତ ହୁଏ, ସେ ବିଭୋର ହୋଇଯାଏ । ଆଜିକାଲି ସେ କବିତା ଲେଖେ, ମାତ୍ର କବିତାର ଛନ୍ଦ ଧାଡ଼ି—ଗତ ଭାବ ସେଥି ଗୋଟିଏ ପଦାର୍ଥକୁ ତୁଳନା କରେ । ମନ ହୁଏ ସେହି କବିତାକୁ ସେ ସରୋଜକୁ ଦିଅନ୍ତା, ମାତ୍ର ପୁଣି କଣ ମନ ହୁଏ ଦେଇପାରେ ନାହିଁ ।

ଗୋଟିଏ ରୂପ ଚିନ୍ତା ଛଡ଼ା—ଗୋଟିକ ବିଷୟରେ ଭାବିବା ଛଡ଼ା—ଗୋଟିକୁ ଚାହିଁ ତୃପ୍ତି ହେବା ଛଡ଼ା—ଗୋଟିକର କଥା ଶୁଣିବା ଛଡ଼ା—ଗୋଟିକର ପରଶ ପାଇବା ଛଡ଼ା ସେ କେବେ ଅନ୍ୟ କୌଣସି ଚିନ୍ତା ହୃଦୟରେ ସ୍ଥାନ ଦିଏ ନାହିଁ । ସେ ଏଣିକି ସରୋଜ ସହିତ ମିଶିବାରେ ଭୁଲି ଯିବା ପାଇଁ ମନାକରେ ନାହିଁ । ଯନ୍ତ୍ରା ଉପରେ ଛିଡ଼ା ହୋଇ ଅଗସ୍ତ୍ୟ ଚକ୍ଷୁରେ ଚାହିଁ ଥାଏ—ଅଜିଲା ମାତ୍ରେ ତାର ହୃଦୟ ଭଣ ହୋଇ ଯାଏ । ତାର ମନ ହୁଏ, ସେ ପିଲା ଦିନ ପରି ହୋଇଥିଲେ ହୃଦୟରେ ମିଶି ଯାଆନ୍ତା; ମନ ସାହସ କରି ପାରେ ନାହିଁ ।

ମଣି ଦିନ ରାତି ସେହି କଥାଟି ଭାବେ—ତାର ବାବାଙ୍କର ଯୁଗଳ ମିଳନ ! ମାତ୍ର ସରୋଜ ତ ତାହା ବୁଝି ପାରିଲା ନାହିଁ—ସରୋଜ ତ ସେଥିରେ ଅବୋଧୀ ପଣି ପାରିଲା ନାହିଁ । ବେଳେ ବେଳେ ମନେ ହୁଏ, କହିଦେବ, ମାତ୍ର କହି ପାରେ ନାହିଁ । କବାଟ ସନ୍ଧିରେ ଝୁଙ୍କିବା କଣରେ

ରହି ସରୋଜକୁ ଅନାଇ । ସେ ଏହି ଦର୍ଶନରୁ କି ସୁଖ ପାଏ ତାହା ଅନୁଭବରେ ବିବେଚ୍ୟ ।

•

ଦିନେ ଅକସ୍ମାତ ସରୋଜ କୁଆଡେ ବାର ବ୍ରହ୍ମାଣ୍ଡ ବୁଲି ବୁଲି ଆସି ବାର ଝଞ୍ଜାରେ ପଡ଼ିଗଲା । ଝଞ୍ଜାରେ ତାର ଦେହରେ ଜ୍ୱର ଆଇଲା । ମଣି କଥା ଭାବି ଭାବି ତାର ପ୍ରାଣ ଅସ୍ଥିର ହୋଇ ଯାଉ ଥିଲା । ସେ ଭାବୁ ଥିଲା, ତାର ପିତା ସ୍ୱର୍ଗରେ ଆଉ କଣ ଭାବୁଥିବେ । ସେ ଯେତେ ବେଳେ ମଣିର ମଧୁର କାନ୍ତି, ମୁଣି ଢଳ ଢଳ କଳା ଡୋଳା ଦୁଇଟି ଛଳ ଛଳ ହେବାର ଦେଖେ, ସମ୍ଭାଳି ପାରେ ନାହିଁ । ଭାବେ ସେ ଏଇ ସୁନ୍ଦରୀ ମଣିକୁ କାହା ହାତରେ ଦେବ । ମାତ୍ର ଜଣେ ଜଣଙ୍କ ପ୍ରତି ଅନୁରକ୍ତ, ଏହା ସରୋଜ ଜାଣେ ନାହିଁ ।

•

ସରୋଜକୁ କଠିନ ଜ୍ୱର ହୋଇଗଲା । ସେ କେତେ ବେଳୁ ଅସି ଏପରି ଜ୍ୱରରେ ପଡ଼ି ଯାଇଛି ତାହା ହେମାମଣିକୁ ଆଦୌ ଜଣା ନ ଥିଲା । ବୋଧେଇ ତାପ ମାଇଁ ପୂଜାରୀ ପଦ୍ମିତ ସେ କେତେବେଳୁ କଣ କଥା ବାର୍ତ୍ତା କରି ବସି ଥିଲା । ସରୋଜ ଅସି ଗଲା—ତାଁ ଯୋଡା ପାଦ ଶୃଙ୍ଖଳ କି—ଏପରି ତ ସେ ସର୍ବଦା ଛନ ଛନ ହୁଏ । ତାର ଗୋଟିଏ ମନ ଏଣେ କାମରେ ଥିଲେ ଗୋଟିଏ ମନ ଅନ୍ୟ ଦିଗରେ । ସରୋଜ ଆଗମନକୁ ଗ୍ରାହ୍ୟ କରୁଥାଏ ।

ସ୍ତ୍ରୀଜାତି ଯେତେ ଶିକ୍ଷିତା ହେଲେ, ତାଙ୍କର ଗଠନର ପ୍ରକୃତି ନେଇ ସେମାନେ ସର୍ବଦା କୋମଳ । ତାଙ୍କୁ ନିରାକାରବାଦୀ ଶିକ୍ଷକ—ମୂର୍ତ୍ତିପୂଜା ବିରୁଦ୍ଧରେ ହଜାର ପ୍ରମାଣ ଦେଖାଇ ସ୍ୱୀକୃତ କଲେହେଁ, ସେମାନେ ନିଜେ ସେ ବିଷୟରେ ଉପଦେଶକ ହେଲେହେଁ ତଥାପି ଅନେକ ଶିକ୍ଷିତ ଧର୍ମବାଦୀ ହିନ୍ଦୁ ଝାଙ୍କର ଦେଶର ଜାତିର ନିତ୍ୟ-ସ୍ଥାପିତ ଦେବତା ଜଗନ୍ନାଥ ନାମ କେବେ ଭୁଲି ପାରନ୍ତି ନାହିଁ । ସେ

କାଠ ଭିତରେ ବାସ୍ତବିକ୍ କ ନୈସର୍ଗିକ ଶକ୍ତି ଅଛି ଯାହାପାଇଁ କୋଟି କୋଟି ନର ନାରୀ ପାଗଳ—

ଖ୍ରୀଷ୍ଟାନ ଆସନ୍ତୁ, ବୌଦ୍ଧ ଆସନ୍ତୁ, ଜୈନ ଆସନ୍ତୁ, ନାସ୍ତିକ ଆସନ୍ତୁ, ମୁସଲମାନ ଆସନ୍ତୁ, ବ୍ରାହ୍ମ ଆସନ୍ତୁ, ଆର୍ଯ୍ୟ ଆସନ୍ତୁ—ଶସ୍ତ୍ର ଦାଉରେ ହେଉ—ଧନ ଲୋଭରେ ହେଉ—ବାକ୍ୟ ବାଣରେ ହେଉ, ସେ ମୂର୍ତ୍ତି-ପୂଜା ଏ ଦେଶରୁ ଉଠିଲା ନାହିଁ । ଯାହାକୁ ଧରି ହେବ ନାହିଁ—ଯାହାକୁ ଛୁଇଁ ହେବ ନାହିଁ, ଯାହା ଧାରଣାର ଅତୀତ—ମନର ଅଗୋଚର ଏପରି ପଦାର୍ଥକୁ କିଏ ଗୋଡ଼ାଇବ ? ହିନ୍ଦୁ ଅନନ୍ତ କାଳରୁ ସେ ମୂର୍ତ୍ତି ମଧ୍ୟରେ କଣ ଦେଖୁଛି, କେବେ ତାକୁ ଭୁଲି ପାରେ ନାହିଁ ।

ଖ୍ରୀଷ୍ଟାନ ସ୍କୁଲରେ ପାଠ ପଢ଼ିଲେହେଁ—ମଣି ଦିନେ ଦିନେ ଏକାକୀ ବସି ସେହି ଜଗନ୍ନାଥଙ୍କୁ ଡାକେ । ସେ ତ ହିନ୍ଦୁଘରର ବାଳକ ! ପାଠ ପଢ଼ୁ କିବ ହେଉ, ତାର ତ ହୃଦୟ କୋମଳତା କଠିନ ହୋଇନାହିଁ । ତାର ବାପ ଅଜା ଯେପରି ପୁରୁଷ ଜଗନ୍ନାଥଭକ୍ତ ବୋଲି ଯେ ଯେ ଭକ୍ତି କରେ, ତାହା ନୁହେଁ—ସେ ଜଗନ୍ନାଥ କହିଲେ ପ୍ରାଣରେ ଗୋଟାଏ ଅପୂର୍ବ ଆନନ୍ଦ ଲାଭକରେ, ତାର ଆଶା ଜଗନ୍ନାଥ ପୂରଣ କରିବେ, ତାର ସର୍ବଦା ଏହି ଚିନ୍ତା । ସେ ଯେ ଦିନ ରାତ ତାଙ୍କୁ ଅଶ୍ରୁରଞ୍ଜିତ ମୁଖରେ କେତେ ଡାକେ, ତାର ମନ ଜାଣେ । ମାତ୍ର ଜଗନ୍ନାଥେ କେବେ ଆନନ୍ଦ ଶୀଘ୍ର ଦିଅନ୍ତି ନାହିଁ । ସେ ପରୀକ୍ଷା କରନ୍ତି, ମନୁଷ୍ୟ ଉତ୍ତୀର୍ଣ୍ଣ ହେଲେ ତାର ପ୍ରାପ୍ୟ ପଦାର୍ଥଟି ତାକୁ ଦିଅନ୍ତି ।

ଉପରେ କଣ ଉଃ ଉଃ ଏପରି ଶବ୍ଦ ହେବାରୁ ତାହା ମଣିର କାନରେ ପଡ଼ିଗଲା । ସେ ଝଟ କରି ଉପରକୁ ଯାଇ ଦେଖିଲା, ଦେବରାଜ ରେଜେଇ ଗୁଡ଼ାକ ଘୋଡ଼ାଇ ହୋଇ କମ୍ପୁଛି । ସେ ଆଉ ଧମ୍ମାଳି ପାରିଲା ନାହିଁ, ଯାଇ ସଙ୍ଗେ ସଙ୍ଗେ ତାର ସେବାରେ ଲାଗିଗଲା ।

ଆଜକୁ କେତେ ମାସ ହେଲା ମଣି ସରୋଜକୁ କେଜାଣି କାହିଁକି ନିଜରେ ଭାଇ ବୋଲି ସମ୍ବୋଧନ କରିପାରୁ ନ ଥିଲା । ଆଜି ନିଜ ସରମ ଫିଙ୍ଗି ଦେଇ ଡାକିଲା—"ଭାଇ ! କିପରି ଏପରି ଜର ହେଲା ?"

ସରୋଜ କହିଲା—"ଏଇ ତ ଘରେ ପହଞ୍ଚିବା ସଙ୍ଗେ ସଙ୍ଗେ ଏପରି ମାଡ଼ି ଆସିଲା । ମଣି ! ତୁ ମୋ ଉପରେ ଅଳ୍ପ ମାଡ଼ି ବସ ।"

ମଣି ବାଧ୍ୟ ହୋଇ ସେପରି କଲା । ଦାସିଆ ମଲା ପରେ ଗୋଟାଏ ବୁଢ଼ା ଗୁଜର ବୋଲି ଖୋଜି ନ ପାଇ ପିଲାଟିଏ ରଖି ଥିଲା । ତାର ନାମ ସେ ଦେଇଥିଲା ଦଇତ୍ୟସିଂହ । ତାକୁ ସମସ୍ତେ ଦଇ ଦଇ ବୋଲି ଡାକୁଥିଲେ । ଏହି ସମୟରେ ଦଇଟି ପହଞ୍ଚି ତାର ଦାଦା ପାଖରେ ମିଶି ବାବୁଙ୍କର ଗୋଡ଼ ଘସିଦେଲା ।

ଦିନ ୩ଟା ବେଳେ ସରୋଜର ଜ୍ୱର ଛାଡ଼ିଲା । ସେ ମଣିର ବିବାହ କଥା ମଣିକୁ କିପରି କହିବ ? ତେବେ ଆଜି ସେ ଗୃହର ଅସୁବିଧାଟା ଅନୁଭବ କଲା । ଭାବିଲା, ଏ ଘରକୁ ଜଣେ ମଣିଷ ନ ହେଲେ ୧୭ ବର୍ଷର ଯୁବତୀ କୁମାରୀଟିଏ କିପରି ରହିବ ? ମୁଁ ତ ଘର ଆଡ଼େ ଏପାଖ ସେପାଖ ହେଉଅଛି । ମଣି ତାର ଶେଯ ପାଖରେ ବଡ଼ ସଂକୁଚିତ ଭାବରେ ବସି ଥିଲା । ତାକୁ ଡାକି ପଚାରିଲା—

"ମଣି ! ମୋର ଘରେ ରହିବାର କିଛି ଠିକଣା ନାହିଁ—ତୁ ଏକୁଟିଆ ଏ ଘରର ଚାକର ବୁଢ଼ାକୁ ନେଇ ଚଳିବାକୁ ବଡ ତ କଷ୍ଟ ହେଉଥିବ ?"

ଲାଜ ଲାଜ କରି ମଣି କହିଲା—"କଣ କଷ୍ଟ ହେବ—ତମେ ତ ଘରେ ଅଛ ?"

"ଅଚ୍ଛା, ମୁଁ ଯଦି ୨।୪ ଦିନ କୁଆଡେ ଯାଏ ?" 'ନାଁ' ତମେ କାହିଁ ଯିବ ? ଗଲେ ମୋତେ ରହିବାକୁ ହେବ, ସେଥିପାଇଁ ଭୟ କଣ ?"

"ନାଁ ମଣି ! ବଡ଼ କଷ୍ଟ ହେବ —ଅଚ୍ଛା—ମୁଁ ଗୋଟିଏ ପ୍ରସ୍ତାବ କରୁଚି, କିପରି ହୁଅନ୍ତା ? ତୋର ମନ ପାଇଲେ କହିବ ।"

"ଏମିତି କିଛି କଥା ନାହିଁ—ଯାହା ତମେ କହିବ, ସେଥିରେ ମୋର ମନ ପାଇବ ନାହିଁ ।" ମଣି ଆଉ ମୁହଁକୁ ଗମ୍ଭୀର କଲା ନାହିଁ, ବୁଲାଇ ଆଣିଲା । ସରୋଜର ଏତିକି ବେଳେ ଗୋଟିଏ କଥାରେ ପୂରା ବିଶ୍ୱାସ ଆସିଲା । ତାର ସନ୍ଦେହ ଦୂର ହୋଇଗଲା ।

ସେ କହିଲା—"ମଣି ! ମୋର ବାପାଙ୍କର ଭଉଣୀ ଯେ ମୋର ପିଉସୀ ଅଛନ୍ତି—ସେ ବୁଢ଼ୀ ଲୋକ । ତାଙ୍କର ଗୋଟିଏ ଝିଅ । ସେ ଶାଶୁ ଘରେ ରହି ଥାଏ । କେବେ କେମିତି ଝିଅ ମାଆ ପାଖକୁ ଆସେ । ପିଉସୀଙ୍କୁ ଆଣିବା କିଁ ? ସେ ଖାଲି ଘରେ ରହିଥିଲେ ଆମର ସାହା । ସବୁ କଥାକୁ ଗୋଟାଏ ହାଁ ଭରି ସେ ହେବେ । ଘର ଚଳେଇବା କଥା ପାଠପଢ଼ାରେ ହୁଏ ନାହିଁ । କଣ କହୁଚୁ ?"

ଏହା କହି ସାରି ସେ ଆଙ୍ଗୁଠିରେ ଲେମାର ହାତକୁ ଟିକିଏ ଚାପି ଦେଲା । ସେହି ଚିମୁଟିରେ ଲେମା କି ଅନୁଭୂତି ଲାଭ କଲା, ତାହା ସେ ଜାଣେ । ଦୂର ଭବିଷ୍ୟତର ଅନ୍ଧକାର କିଏ ଦେଖିଥାଏ ? ସମସ୍ତେ ତ ବର୍ତ୍ତମାନର ଆନନ୍ଦରେ ବିଭୋର । ହସି ଦେଇ ଭାଇକୁ କହିଲା—"ଭାଇ ! ମୁଁ କଣ ନାହିଁ କରୁଚି, ଅଧିକ ଭଲ ହବ ନା । ପିଉସୀ ଆସିଲେ ଘର ସମ୍ଭାଳିବେ, ଶିଖାଇବେ । ତାଙ୍କୁ ଆଣ । ଥରେ ସଙ୍ଗ କହିଲା ଭାଇ କଥାରୁ ମୁଁ ଭଲେ ବୁଝିବି ନାହିଁ ?"

ସରୋଜର ଜ୍ୱରକ୍ଲିଷ୍ଟ ମୁଖରେ ହାସ୍ୟ ଆସିଲା । ସେ ହସି ଦେଲା ଏବଂ କହିଲା—"ପାଗଳ ! ତୋତେ ନ ପଚାରି—ମୁଁ କପରି କରନ୍ତି । ତୁ ପରା ମୋର ପିତାଙ୍କର ସ୍ନେହର କନ୍ୟା ! ତୋତେ ଛାଡ଼ି ଯିବି କପରି ? ତୋ ପାଇଁ ସେ ମତେ ବନ୍ଧୁ ସ୍ଥାନ ଭୁଲିବାକୁ ହେବ ।" ବର୍ତ୍ତମାନ ମଣି ଭାବିବାକୁ ଲାଗିଲା ସେ ଏଁ ଘରେ ଥାଇ ଥାଇ ତେବେ ଦାଶରଥ୍ୟ ଭୁଲା ପଡ଼ିଚ କାହିଁ ? ତାର ମନ କଣ ହୋଇଗଲା । ତୁନ ତୁନ ଅଖିରୁ ଲୁହ ପୋଛି ଦେଲା ।

ଏଥର ଜ୍ୱର ସରୋଜକୁ ପ୍ରାୟ ଚାରିଦିନ ହେଲା । ଏହି ଚାରିଦିନର ଯତ୍ନ ପୂରଣ କରିବା ପାଇଁ ତାକୁ ପ୍ରାୟ ଦୁଇମାସ ଲାଗିଥିଲା ।

ଦ୍ୱିତୀୟ ଦିନର କଠିନ ଜ୍ୱରରେ ମଣିର ବଡ଼ ଭୟ ହେଲା— ତେଣୁ ସେ ତାର ବିନୋଦ ଭାଇ ପାଖକୁ ଟେଲିଗ୍ରାମ କରି ଦେଲା । ବିନୋଦ ବର୍ତ୍ତମାନ ସ୍କୁଲ ମାଷ୍ଟର । ତେବେ ସେ ଯଥାସାଧ୍ୟ ଯତ୍ନ କରି ୪ର୍ଥଦିନ ସକାଳେ ଆସି ହାଜର ହୋଇ ଦେଖିଲା, ମଣି କାନ୍ଦୁଚି ଆଉ ସରୋଜକୁ ଅର୍ଦ୍ଧମୃତ, ପାଖରେ ଚାକର ଟୋକା ଦିବ । କବିରାଜ କଣ ଔଷଧ ଦେଇଚି—ତେବେ ମଣି ତାର ନିଜ ଔଷଧ ଦେଉଚି । ସେ ନିଜେ ହୋମିଓପ୍ୟାଥିକ—ଆଉ କବିରାଜ ଗୃହ ଅବସ୍ଥା ବାକ୍ସ ପ୍ରତ୍ୟକ୍ଷ ଅଣି ଅବସ୍ଥା କରେ । ସୁନ୍ଦର ରୂପଟି ଧରି କେବଳ ସେ ଘରେ ବସି ନ ଥାଏ । ଘରର ଯାବତୀୟ କାମ ତାକୁ ଦେଖି ତାକୁ ପଡ଼େ । ଚାକର ବାକର ଦରମା ଦେବା—ଘରର ପରିଷ୍କାର ପରିଚ୍ଛନ୍ନତା, କୋଉଠି ଜଳି ଲାଗିଲା— ଧୋବା ଠିକରେ ଲୁଗା ଦେଲା କି ନାହିଁ ଇତ୍ୟାଦି ଇତ୍ୟାଦି ସମସ୍ତ ଗୃହ ବିଷୟ ସେ ଏପରି ବୁଝେ ଯେ, ତାଙ୍କ ଘରେ ଟିକିଏ ପାଣି ଶୁଖେ ନାହିଁ । ଚକିକୁ ମାଣି ହୋଇ ଏକ ମିନିଟ୍ ସେ ବସିବାକୁ ଭଲପାଏ ନାହିଁ—ନ ବସିଲେ କଣ ହେବ—ଗୋଟିଏ ଚିନ୍ତା ତା ମନରେ ସର୍ବଦା କୁଟୁ କୁଟୁ ହୋଇ ତାକୁ ଅନେକ କାମରେ ବାଧା ଦିଏ ।

ବିନୋଦକୁ ଦେଖି ଦେଇ ସତୀଶର ଗୋଟାଏ ନୂଆ ପ୍ରାଣ ଆସି ଦେହରେ ପଶିଗଲା । ସେ ଆନନ୍ଦରେ ଭାଇଙ୍କୁ ଡାକି ଡାକିଲା—"ଭାଇ ! ଭାଇ ! ବିନୋଦ ଭାଇ ଆସିଛନ୍ତି ।"

ସରୋଜ କଡ ଲେଉଟାଇଲା । ଆଖି ଫିଟାଇ ବିନୋଦକୁ ଚାହିଁଲା । ବିନୋଦ ସରୋଜର ଚିରସଙ୍ଗୀ । ବିନୋଦ ସରୋଜ ପାଇଁ ପ୍ରାଣ ଦେଇ-ପାରେ । ଆଜି ସେମାନେ ପାଠ ସାରି ଅଲଗା ହୋଇ ରହିଲେହେଁ ଟିକିଏ ଖବର ପାଇଲେ ଶତଶତ କାମ ଛାଡ଼ି ଦୁହେଁ ଦୁହିଙ୍କୁ ଯେ ଦେଖି ଯିବେ, ଏଥିରେ ସନ୍ଦେହ କଣ ?

ଯେବେ ବିନୋଦର ଭଉଣୀ ବିନ୍ଦୁ ଘରକୁ ସରୋଜ ଯାଇ ପହଞ୍ଚି ଥିଲା—ତାଙ୍କ ଗାଁ ଆନନ୍ଦରେ ଭାସୁଥିଲା । ଡେପୁଟୀ ଶ୍ୟାମବାବୁଙ୍କ ପୁଅ ଏଇ କୁଡ଼ିଆ ଘରକୁ ଆସିଛି ବୋଲି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଲୋକଙ୍କର ଧାରଣା ଥିଲା, ବଡ ଲୋକର ପୁଅ ହେଲେ ବା ଉଚ୍ଚଶ୍ରେଣୀ ପାଠ ପଢ଼ିଲେ ସାନଲୋକଙ୍କୁ ଖାତିର କରନ୍ତି ନାହିଁ; ମାତ୍ର ସରୋଜ କୁମାରର ବ୍ୟବହାରରେ ଲୋକେ ଯେ ଆନନ୍ଦ ଅନୁଭବ କଲେ ତାହା ପୂର୍ବେ କେବେ ପାଇ ନ ଥିଲେ । ଅହା, ତାଙ୍କ ଗାଁରେ ମାଇନର ପାଶ କରି—ଅବା ତା ଉପରକୁ ଦି କ୍ଲାଶ ଯାଇ ପିଲାଗୁଡ଼ାକ ସମସ୍ତଙ୍କୁ ମୂର୍ଖ ମୂର୍ଖ ଭାବି କି ବାବୁଗିରି ଦେଖାଉ ନାହାନ୍ତି କି ? ମାତ୍ର ଏତେ ପାଠ ପଢ଼ି, ଏତେ ବଡ ଲୋକର ପୁଅ ହୋଇ, ଏତେ ଧନ ସମ୍ପତ୍ତିର ଏକମାତ୍ର ମାଲିକ ହୋଇ କେଡେ ବିନୟୀଟି ସେ । ଦୀର୍ଘ ଜୀବନ ପାଇଥା ବାପା କହି ତାଙ୍କୁ ଯେ କେତେ ବୁଢ଼ା ସୁକଲ୍ୟାଣ କରିଥିଲେ ତାର ସୀମା ନାହିଁ । ସରୋଜ ମଧ୍ୟ ସେମାନଙ୍କୁ ବେଶ୍ ସନ୍ତୋଷ କରିଥିଲା ।

ବିନୋଦ ମୁଣ୍ଡପାଖରେ ବସି ଡାକିଲା, "ସରୋଜ ତୋର ସବୁଦିନେ ଏହିପରି କେବେ କେମିତି ଜର ହୁଏ । ସେ ଅଭ୍ୟାସଟା ଗଲା ନାହିଁ—

ପୂର୍ବର ଜର ଆସିବ, ଏକାବେଳେ ସେତା ଚଇତନ କିଛି ମାତ୍ର ରହିବ ନାହିଁ ।"

ବଡ଼ କଷ୍ଟରେ ସରୋଜ କହିଲା—"ହଁ, ଭୂତଲୋକକୁ ଯାଇଥିଲି, ଏ ଚନ୍ଦ୍ରଦିନ ମୁଁ ମଣି କଥା କିଛି ଜାଣି ନାହିଁ । ମଣି ମତେ ଫେରାଇ ଆଣିଚି, ମଣି ତାର ପ୍ରାଣ ଦେଇ ମତେ ବଞ୍ଚାଇଚି । ସେ କଣ ଖାଇଚି କି ନାହିଁ ଆଗ ବୁଝ । ସେ ଦୁଇ ଦିନ ହେଲା କିଛି ଖାଇ ନାହିଁ । ଖାଲି ଜଗନ୍ନାଥ ଜଗନ୍ନାଥ ହେଉଚି— ଜାଣୁଚ ।"

ବିନୋଦ ମଣିକୁ କହିଲା—"ମଣି ! ଏ ସବୁ କି କଥା—ତୋର ଜ୍ୱର ଭଲ ତ ? ଏଥିପାଇଁ ଖାଇ ନାହୁଁ କିଆଁ ? ଆସେ ଆମ୍ଭେମାନେ ଖାଇବା ।" ସରୋଜର ଦେହ ଟିପି ଦେଖିଲା ଆଉ ଜର ନାହିଁ—କେବଳ ଦୁର୍ବଳତା, ତା ମନରୁ ଭୟ ଛାଡ଼ିଗଲା । ସେ ମଣିକୁ ଦୋଷାଉ ଦୋଷାଉ ନେଇ ବଡ଼ କଷ୍ଟରେ ଦଗୁଣ୍ଡା ଟୁଅଇ ଉପରକୁ ଆଣିଲା ।

ସରୋଜର ଦେହ ପୂର୍ଣ୍ଣ ସୁସ୍ଥ ହୋଇଅଛି । ସେ ବିନୋଦ ଜିମାରେ ମଣିକୁ ଛାଡ଼ିଦେଇ ପିଉସୀଙ୍କୁ ଆଣିବାକୁ ଯାଇଛି । ବିନୋଦ ଆଜକୁ ପ୍ରାୟ ୨ ମାସ ହେଲା ଛୁଟି ନେଇ ଏଠାରେ ଅଛି । ଏହା ମଧ୍ୟରେ ବହୁତ ସୁଖର ଦିନ ଗତ ହୋଇଅଛି; କେତେ ଦିନ ଦୁଇବନ୍ଧୁ ବସି ମଣି ବିଷୟରେ ଅନେକ କଥା ବାର୍ତ୍ତା ହୋଇଛନ୍ତି । ମାତ୍ର ବାହାର କରି ପାଇ ନାହାନ୍ତି । ମଣିର ହୃଦୟ କଥା ବିନୋଦ ପରିଷ୍କାରଭାବରେ ଅନୁଭବ କଲେହେଁ ସରୋଜକୁ କେବେ କୁହେ ନାହିଁ । ଏବେ ଦୁଇବନ୍ଧୁଙ୍କର ପ୍ରସ୍ତାବ ହୋଇଛି ଯେ, ସେମାନେ ଦୁହେଁ ଖୁବ୍ ଝୁଙ୍କାଏ ତର ଅନ୍ୱେଷଣରେ ବୁଲିବେ । ବିନୋଦ ସେଥିରେ ହଁ ଭରିଚି । ସେଥିପାଇଁ କେତେଦିନ ହେବ ପିଉସୀଙ୍କୁ ଆଣିବାପାଇଁ ସରୋଜ ଯାଇଛି ।

ଏଣେ ମଣି ଆଜି ବିନୋଦ ଘରେ ଅଛନ୍ତି । ଏଥିମଧ୍ୟରେ କୌଶଳୀ ବିନୋଦ ମଣିର କବିତା ଗୁଡ଼ିକ 'ସବୁ ଆମୂଳଚୂଳ ପଢ଼ିଛି । କବିତାରେ ସେ ଦେଖିଛି ଯେ, ଗୋଟିଏ ପ୍ରେମମୟୀ ଛଡ଼ା ସେ ଅନ୍ୟ କାହାକୁ ତାର କବିତାରେ ସ୍ଥାନ ଦେଇ ନାହିଁ । କବିତାର ମାଧୁରୀରେ କେଉଁ ଶୁଷ୍କ ପ୍ରାଣ ସେ ରସାଳ ନ ହେବ ଏମନ୍ତ ନାହିଁ ! ହୃଦୟ ଫୁଟି ଯାହା ପ୍ରକାଶିତ ହୋଇଅଛି ତାହା ତ କବିତା । ସେ କବିତା କାହାର ପାଠ୍ୟ ନୁହେଁ ? ସେ କବିତାରେ କେତେ ଚକ୍ଷୁର ଅଶ୍ରୁଧାରା କେତେ ହୃଦୟର ପ୍ରାଣସ୍ପର୍ଶୀ ଭଲ ପାଇବା, କେତେ ଗଭୀର ଦୀର୍ଘଶ୍ୱାସ, କେତେ ଅଭିମାନ, କେତେ ସୂକ୍ଷ୍ମଚିନ୍ତା ଯେ ଅଛି, ତାହା ହୃଦୟକୁ ଝଲସାଇ ଦିଏ । ବିନୋଦ ପଢ଼ି ପଢ଼ି ଅଭିଭୂତ ହୋଇଗଲା ! ହାୟ—ଏ କବିତା ଯାହା ଅନ୍ତରର ଅନ୍ତରତମ ପ୍ରଦେଶରୁ ସ୍ୱତଃ ଫୁଟିଅଛି, ମୂର୍ଖ ସରୋଜ ତାହାକୁ ତାକୁ ସମର୍ପି ଦେବାକୁ ଯାଉଛୁ ? ମୁଁ ସଙ୍ଗରେ ରହିବ । ଦେଖିବି, ତୋର ଦୃଷ୍ଟି ସମକ୍ଷରେ ମଣିର ହୃଦୟ ପାଇଁ ଅଉ ହୃଦୟ ଅଛି କି ନାହିଁ ।' '

ବିନୋଦ ବସି ଏହି ସବୁ କଥା ଭାବୁଛି—ଏହି ସମୟରେ ଅର୍ଗାନରେ ବାଜି ଉଠିଲା—ତତ୍ପ ନାରୀଶାବ୍ୟଞ୍ଜିତ କୋମଳ ମଧୁର ସ୍ୱରରେ ଗୋଟିଏ ସଙ୍ଗୀତ—ସମ୍ଭବତଃ ତାହା ମଣିର ନୂଆରଚନା । ସଙ୍ଗୀତର ଅପୂର୍ବ ମାଧୁରୀରେ ବିନୋଦର ହୃଦୟ କଣ ହୋଇଗଲା—ସେ ଶୁଣିଲା—ଶୁଭୁଛି—

ଯେତେ କଲେ ପର          ତୁମର କରିବି
ଯିବାକୁ ମୋ ଶର ବାସନା,
ଯେତେ କଲେ ଦୂର          ନହେବି ଅନ୍ତର
କରିବ ଚରଣ ବନ୍ଦନା ।

ଅଶ୍ରୁଜଳରେ ଧୋଇ ଦେବି ପଦଦ୍ୱୟ
ତୁମେ ମୋ ହୃଦୟ ନିଧି,
ତୁମ କୃପା ବିନା ପାଇବି ନାହିଁ ମୁଁ
ଏ ଜୀବନେ କେବେ ସିଦ୍ଧି ।
ମୋ ହୃଦ ଆସନେ ନ ବସିବ ଯେବେ
କାନ୍ଦି ଫିଙ୍ଗିଦେବି ଦୂରେ,
ତୁମର ନାମେ ମୁଁ ଗାଇବି ସଙ୍ଗୀତ
ଦୁଃଖେ ମର୍ମଭେଦୀ ସ୍ୱରେ ।
ତୁମର ନାମକୁ କରି ଜପାମାଳ
ଡୋରିବି ଦିବସ ନିଶି,
ତୁମର ଚରଣରେ କାଳି କାନ୍ତି ଧନେ
ଧୂଳସାଥେ ଯିବି ମିଶି ।
ନବଣ ଅନ୍ତରେ ଦେଇଥିଲ ଯେବେ
ଅମୀୟ ସେନେହ ଧାର;
ସେହି ଦିନୁଁ ମୁଁ ତ କରି ନେଇଥିଲି
ତୁମ୍ଭଙ୍କୁ ହୃଦୟ ହାର ।
ଯାଅ ଯାଅ ଭୂମି ନବୀନ ପ୍ରଭାତେ
ନଗ୍ରହିଁ ନସ୍ପୃହିଁ ଅଉ
ତୁମ ବିମୋହନ ବଦନ-ତରଣୀ
ମନ-ନୀରେ ଭସୁଥାଉ ।

ବିନୋଦର ପ୍ରାଣ କଣ ହୋଇଗଲା—ସେ ମନେ ମନେ ସରୋଜକୁ ଶତ ଧିକ୍କାର ଦେଲା । ତାଁରେ———

ହାୟ ! ସେ କଣ କରିବ ? ବିଧିର ନିର୍ଦ୍ଦେଶ ଯାହା ତାହାହିଁ ହେବ ଏଥିରେ ସରୋଜର ଦୋଷ କଣ ?

ଯଥା ସମୟରେ ସରୋଜ ମିଶ୍ରଙ୍କୁ ସେହି ଘରେ ମିଳିଲା । ତାହା ଶୁଭ ମୁହୂର୍ତ୍ତ କି ଅଶୁଭ ମୁହୂର୍ତ୍ତ ସେ ଆଦୌ ବୁଝି ନ ଥିଲା ସେତେବେଳେ ବୁଢ଼ୀଙ୍କ କଥାରେ ମଣିକୁ ସମର୍ପି ଦେଇ ଦୁଇବନ୍ଧୁ ଘର ଖୋଜ ବାହାରିଲେ । ମଣି ଆଖିର ଲୁହ ଆଖିରେ ମାରି ଘରେ ରହିଲା । ତାର ପ୍ରାଣ କଲବଲ ହେଲା । ମୁହଁ ଫିଟାଇ ତାର ମର୍ମର ବେଦନା କାହାକୁ କହିବ ? ସର୍ବଦା ସଜଳ ନୟନରେ ଘରକୋଣରେ ପଡ଼ି ରହିଲା । ଚାଲିବେଳେ ମଣିର ମୁହଁର ଭାବ ଲକ୍ଷ୍ୟ କରିଥିଲା ଜଣେ—ସେ ବିନୋଦ ।

*

ମଣି ଫୁଲର କୋମଳତା ନେଇ, ଦାମିନୀର—ଦୀପ୍ତି ନେଇ, କୌମୁଦୀର ରୂପ ନେଇ ଜନ୍ମ ହୋଇଥିଲା । ସେ ଗାଢ଼ ଅଭାବ ମଧ୍ୟରେ ଥିଲା; ମାତ୍ର କଷ୍ଟ କେବେ କଣ ଜାଣି ନ ଥିଲା । ପ୍ରଥମ ଜୀବନ ପାଞ୍ଚବର୍ଷ-ଯାଏ ସେ ଶିଶୁ ଅବସ୍ଥାରେ ବାପ ମାଆଙ୍କ କୋଳରେ ମହାସୁଖରେ ଥିଲା, ତାପରେ ତାର ବୁଢ଼ୀମାଆ ନିକଟରେ ୧୦ ବର୍ଷ ଯାଏ ରହି କେବେ ଏତେ ଅଭାବ ମଧ୍ୟରେ ଦୁଃଖ କଣ ଜାଣି ନ ଥିଲା । ତା ପରେ ଆସିଲା ବଡ଼ଲୋକ ଘରକୁ, ତାର ଭାଗ୍ୟ ପରିବର୍ତ୍ତିତ ହେଲା । ଶ୍ୟାମବାବୁଙ୍କର ସେ ହେଲା ଗେହ୍ଲା ଝିଅ । ତାକୁ ସେ ଫୁଲରୁ ବଳି ଆଦରରେ ପାଳିଥିଲେ । ଇସ୍କୁଲରେ ପଢ଼ିଲା । ହଜାର ହଜାର ଟଙ୍କାରେ ଭାସିଲା । ଆଦର ସ୍ନେହ ଛଡ଼ା ଦୁଃଖ, କଷ୍ଟ ସେ କିଛି ଜାଣିଲା ନାହିଁ । ପାଶ କଲା—ଘରକୁ ଆସିଲା, ବାପା ମଲେ—ତାପରେ ତାର ହୃଦୟର ନିଧି ପ୍ରାଣର ପ୍ରାଣ ଭାଇ ତତ୍ତ୍ୱରେ କାଳ କାଟିଲା । ତାର ଭାଇ ତାକୁ କେବେ ନିମିଷକ ପାଇଁ ମନ ଭୋଳ କହି ନାହିଁ । ମାତ୍ର ଆଜ— ?

ଯେ ରୂପ ଗୁଣରେ ଲକ୍ଷ୍ମୀ, ସର୍ବତୋଷର, ତା ଉପରେ ଆଜି ଏ କି ତଡୋଇ ? ତାର ପ୍ରାଣ ଅଥୟ ହେଲା । କାନ୍ଦିଲା—କାନ୍ଦି ପାରିଲା ନାହିଁ, କହିଲା—କହିପାରିଲା ନାହିଁ । ମନ ବଦଳାଇବାକୁ ଭାବିଲା; ମାତ୍ର ତାହା

ମଧ୍ୟ କରିପାରନ୍ତି ନାହିଁ । ଆଉ ସେ ଏକାକୀ—ଶୂନ୍ୟ; ତାର ଆଉ ନିଜର ବୋଲି ନାହିଁ—ତାର ଆଉ ହୃଦୟର କେହି ନାହିଁ । ଜଗତରେ ତ ତାର ଜଣେ ମାତ୍ର ନିକର । ସେ ତ କେଉଁ ଦୂର ଗଳିର ରାଇଜର ଅତିଥି, ସେ କାହା ଆଗରେ ତାର ଦୁଃଖ କାହାଣୀ କହିବ ? ସବୁଦା କେତେ କଣ ଭାବେ, ମାତ୍ର କିଛି ସେ ଭାବନାର ଥଳକୂଳ ପାଏନାହିଁ ।

ଆଜକୁ ମୋଟେ ପନ୍ଦର ଦିନ ହେଲା ପିଉସୀଙ୍କର ଆଗମନ । ସେ ହିନ୍ଦୁ ବିଧବା । ତାଙ୍କର ବାର ଦିନରେ ୧୩ ଉପାୟ ନିଁଇଁବା ପାଇଁ ! ଯଦି ସୁନ୍ଦରୀ ହିସାବରେ—ଧନବନ୍ତ ହିସାବରେ—ଗୁଣ ହିସାବରେ କିଏ ଥାଏ ଦରିଦ୍ର ତଳରେ, ତେବେ ତାଙ୍କ ମତରେ ତାଙ୍କ ନିଁଇଁ । ମାତ୍ର ପ୍ରକୃତରେ ତାଙ୍କର ନିଁଇଁବାର ରଙ୍ଗ ଖୁବ୍ ଚୋପା ଏହି ରଙ୍ଗକୁ ଯେ ସୌନ୍ଦର୍ଯ୍ୟ କୁହାଯାଏ ଏହା ସୌନ୍ଦର୍ଯ୍ୟ ଗ୍ରାହକମାନଙ୍କର ଧାରଣା କରିବା କର୍ତ୍ତବ୍ୟ । ଦେହ ମୁଖର ଗଠନ ଦେଖିଲେ ପ୍ରାଣ ଶିହରି ଉଠେ, ମାଙ୍କଡ଼ୀ କରି ଜନ୍ମ ନ ହୋଇ ବାଧାତା ଏପରି ଜନ୍ମ ହେବାରେ କି ସାର୍ଥକ ହୋଇବ ଜଣା ଯାଏ ନାହିଁ; ତଥାପି ସେ ସୁନ୍ଦରୀ । ଯେତେ ହେଲେ ତାର ନାକ ଖଣ୍ଡିଏ ଫୋଡ଼ା ହୋଇ ଅଛି । ସେଥିରୁ ଚାଏ ଏପରି ଆକାର ଧାରଣ କରିଚ ଯେ, ସେଥିରେ ଗୋଟାଏ ପେନସିଲ ଚାଲିଯିବ । ନାକର ଚମଡ଼ା ଆଉ ଅଳ୍ପ ବାକି ଥାଉ ଥାଉ ବୁଦ୍ଧି କରି ସୁନ୍ଦରୀ ଅଲଗା କଣାକୁ ତାଙ୍କ ପରମ ବଢ଼େଇର ଧନ ୨୦ଟଙ୍କାର ନଥଟାକୁ ବଦଳେଇ ଦେଇଚନ୍ତି । ଆଉ ନେହଣାମାନେ ବେଶ୍ ଲଗି ଲଗି ଯତ୍ନରେ ଅଛନ୍ତି । ଏହି ଗହଣାହିଁ ସ୍ୱାମୀ ପ୍ରୀତି ଏବଂ ସତୀତ୍ୱର ପରମ ନିଦର୍ଶନ ପତ୍ର ! କାନରେ ଅସଂଖ୍ୟ କଣା—କେତେ ଯେ କଣ ଓହଳିଛି ତାର ସୀମା ନାହିଁ; ମଳ ଗୁଡ଼ିକ ସେ ବେଶ୍ ଯତ୍ନରେ ମୁଖପଦ୍ମରେ ସାଇତି ରଖିଚନ୍ତି । ନାକରୁ ମଇଳା ବାହାର କରିବାର ବିଜ୍ଞାନ ମାତ୍ର ଏ ଜୀବନ୍ତ ପ୍ରକ୍ରିୟା ମଧ୍ୟରେ କପର ନିକ୍ଷିପ୍ତ ତାହା ସେ ଜାଣନ୍ତି । ଏହିପରି ସମଗ୍ର ଦେହର

ଗହଣା ବର୍ଣ୍ଣନା କଲେ ବେଳ ବୁଡ଼ି ଯିବ । ମୁଣ୍ଡରେ—ମୁଣ୍ଡ ବାଳରେ, ବେକରେ, ହାତରେ, ଗୋଡ଼ରେ, ଅଣ୍ଟାରେ ଇତ୍ୟାଦି ଇତ୍ୟାଦି । ଏଣେ ଲଗାଣସ୍ତ୍ରି ବେଶ୍ ତାତ୍ପର୍ଯ୍ୟରେ ଶରୀର ଅବୃତ କରନ୍ତି । ମୁଣ୍ଡ ଧଣିବାଙ୍କୁ ଗୁରା ନାହିଁ, ମାତ୍ର ଅଉ କେତେ ଜାଗା ଦିଶିବା ଶାସ୍ତ୍ରବିରୁଦ୍ଧ ନୁହେଁ । ଗୋଡ଼ଗାଇ ବେଶ୍ କରି ମୁଣ୍ଡଟିକୁ ବାଲିଭିତରେ ପୋତନ୍ତି, ମାତ୍ର ତାର ଲଞ୍ଜ ପାଖଟା ପରଷ୍ପାର ଭବେ ଦର୍ଶ କରି ନେବାନ୍ତି ।

ତେବେ ଯାହା କହୁ ହେଲେହେଁ ତାଙ୍କର ଝିଅ ସୁନ୍ଦରୀ । ସେ ଇସ୍କୁଲ—ଗାଁ ପୃଷ୍ଠଶାଳୀକୁ କେବେ ଦିନେ ନା କଣ ଯାଇଥିଲା, ମାତ୍ର ପାଠଗୁଡ଼ାକ ବଡ଼ ଗରଷ୍ଟ ଖାଦ୍ୟ । ମର୍କଟ ନୟନରେ ତାହାର ରୂପ ଦେଖି ତାକୁ ସୁନ୍ଦର ଶରୀରରେ ଜୀର୍ଣ୍ଣ ହେବ ନାହିଁ ଭାବି ଫେରିଆଇଲା । ଅଜ କାଲ କଥା ପଡ଼ିଲେ କହନ୍ତି—"ଯା ମ, ମୋର ଯୋଜ୍ ବୁଝି— ମୁଁ ପାଠ ପଢ଼ିଥିଲେ ଏଇ ନବଗଣ୍ଡ ମେଦିନୀ ଏକ କରି ନ ଥାନ୍ତି ଯେବେ !" ଅଜ୍ ତାଙ୍କ ଗରବ ଗୌରବ କଥା ବେଶୀ ଲେଖି ଲାଭ ନାହିଁ । ମଧୁର ରସ ସହିତ ଅମ୍ଳରସ ଭଲ ଏହା ପ୍ରୀତିକର ହେବ ।

ପ୍ରଥମେ ପିଉସୀ ସରୋଜ ଘରକୁ ଅସି ପ୍ରାୟ ଦିନ ଯୋଡ଼ାକରେ ବେଶ ମାଲିକ ହୋଇ ପଡ଼ିଚନ୍ତି । ଏହାମଧ୍ୟରେ ତାଙ୍କର ସୁନ୍ଦରୀ କନ୍ୟାଙ୍କୁ ମଧ୍ୟ ଶାଶୁଘରକୁ ଅଣାଇଚନ୍ତି । ସେ ଅଉ ଭୂଇଁରେ ଛିଡ଼ା ହେଉ ନାହାନ୍ତି । ମଣିକି ନେଇ ତାଙ୍କର ବେଳେ ବେଳେ ଥଟା ପରିହାସ ହୁଏ । କେବେ କେବେ ମିଛରେ ଦେଖାଇ ଶିକ୍ଷିତ ହୋଇ ମଧ୍ୟ କହନ୍ତି— "ଇଏ କ ଟେଣେ ଲୋ ମା, ମାଇକିନା ଝିଅ ଧନରାଜି କନ୍ଧ କଡାପ ଧରି ବସିଥିବ ! ଛି ଛି !"

ପ୍ରଥମ ପାଞ୍ଚଟି ଦିନ ସରୋଜର ସମର୍ପଣ ଅନୁଯାୟୀ ପିଉସୀ ମଣିକୁ ବେଶ୍ ସ୍ନେହ କରୁଥିଲେ । ସେଥିପାଇଁ ମଣି ଭାବିଥିଲା, ଏଥି ବୃଦ୍ଧାଯୋଗେ

ତାର ଧନ କଟିଯିବ । ମାତ୍ର ତାହା ହେଲା ନାହିଁ । ଧନଙ୍କର ସାଧାରଣ ଘଟଣାରେ ମଣି ଉପରେ ବଜ୍ର ପଡ଼ିଲା ।

ପିଉସୀ ଅଇଲା ଦିନୁଁ ସେ ନିଜେ ରୋଷେଇ କରି ଖାଆନ୍ତି । ପ୍ରକାଶ ରୋଷେଇ କରେ ଯେ, ମଣି ଆଉ ସୁକର ଚାକର ଖାଆନ୍ତି । ମଣି ପିଉସୀଙ୍କର ପରିବା ବନେଇ ଦିଏ, ବେଳେ ବେଳେ କାମ କରିଦିଏ । ଦିନେ ସେ ଖାଇ ବସିଛନ୍ତି, ଏଣୁ ମଣି ମୋଟାଏ ଖବରକାଗଜ ନେଇ "ଏଇ ଦେଖିଲଣି ନାନ ?" କହି ତାଙ୍କ ଖାଲିଟା ଜାଗାରେ ଝଟ୍‌କିନା ପହଞ୍ଚିଗଲା । ସେ ଜାଣେ ନାହିଁ, ଏଥିପାଇଁ କିଛି ଗୋଳ ଲାଗିବ । ତାର ଆନନ୍ଦ ଏକା ଅହଙ୍କେଚୂର୍ଣ୍ଣ ହୋଇଗଲା । ପିଉସୀ ପ୍ରାୟ ୩ଭାଗ ଭାତ ଖାଇ ସାରିଥିଲେ; ମଣିର ଛାଇ ପଡ଼ିଗଲା ବୋଲି ଝଟ୍‌କିନ ଉଠି ପଡ଼ିଲେ । ଆଉ କିଛି କହିଲେ ନାହିଁ । ମନେ ମନେ ଗୁଣୁ ଗୁଣୁ ହେଲେ, "ଛି ଦୁର୍ଯୋଗରେ ସାତ ପାହିଥିଲି—ଶ୍ରଦ୍ଧାରେ ଖାଇବା ବେଳଟାରେ ପଡ଼ିଲା—କଣ ହେବ...!"

ଆଉ ମଣି ଏକମିନିଟ ଛିଡ଼ା ହୋଇ ରହି ପାରିଲା ନାହିଁ; ତାର ମୁଣ୍ଡ ବୁଲାଇ ନେଲା—ସେ ଅପି ବଡ଼ କଷ୍ଟରେ ବିଛଣାରେ ଶୋଇ ପଡ଼ିଲା । ଆଉ ସେ ଦିନଠୁ ସେ ଖାଇବା ବେଳେ ତାଙ୍କ ପାଖ ମାଡ଼ିଲା ନାହିଁ । ମାବ ମନ ବଦଳାଇବା ପାଇଁ ବେଳେ ବେଳେ ଯଦିଚ ତାଙ୍କ ପାଖକୁ ଗଲା, ସେ କାହିଁକି ସୁଖରେ କଥା କହିଲେ ନାହିଁ ।

ଦିନେ ମଣି ଉପର ମହଲରେ ଛିଡ଼ା ହୋଇଛି—ତାକୁ କେହି ଦେଖି ନାହାନ୍ତି—ବୁଢ଼ୀ ନେହେନ୍ତରଆଣୀ ସଙ୍ଗେ ବସି ଗପ କରୁଛି— "ହଇଲେ ଝିଅ, କହିଲୁ କହିଲୁ, ମୁଁ ବେଶୀ ଅପଣାର କି—ଏଇ ଧାଙ୍ଗାଡ଼ୁଣୀ ବେଶୀ ଅପଣାର ? ସଂଗେ ଜଣ ଏକୁ କହି ଯାଉଛି ମତେ ଏପରି ପଢ଼ି ଦେବା ପାଇଁ—ପ୍ରକାଶ ପରିବାରରୁ ଜିନିଷ ବାହାର କରି

ନେବ, ମୋତେ ପ୍ରତିଦିନ ଏପରି ଗଣ୍ଡେ ଗଣ୍ଡେ ପଢ଼ ଦିଅ ହେବ ? କହିଲୁ ଝିଅ କହିଲୁ, କା ଦିନ ଏଥିରେ ଧମାଳିବ । କାଲି ମୋ ଝିଅଟି ଅପିଚ—ସେ କଣ ଏକଥା ପଚାରିବ କି ? କଲେ, ତୋର କଣ ଅଛି—ତୁ ଆମ ଜାତିର ନାଁ ପକାଇ—ତୋତେ ଧାଇଁ ବଡ଼ କରିଦେଲେ, ଏଥିପାଇଁ କଣ ତୁ ଘରର ଦେବୋସବା ? ସବୋଜ ଆସିଲେ ଏଥର ହବୁ ମୁଁ ଠିକଣା କରି ନେବି ଯେ । ଏଇପରି ଗୃହିଣୀ ରଖିବାକୁ ମୋତେ ଏଇଠିକି ଆଣିଚ, ଯଲେ ଝିଅ ! ତୁମେ ଅଦୌ ବୁଝି ନାହଁ । ଏ ଯୋଉ ମଣି, ଯା ଗୁଣ ତୁମେ ନ ଜାଣି ଭଲ ଭଲ ସିନା କହୁଚ—ସାରୁ ଭିତରେ ମାରୁ ନ ଥାଇ ଯିବ କୁଆଡ଼େ ?" ଏପରି କେତେ କେତେ କଥା—

ଏଥର ମଣିର ଆଖିରେ ଲୁହ ଆସିଲା—ସେ ବିପଦ ଗଣିଲା । ତାର ବିପଦ ଯୋଗ ଅସୁଚି । ସବୋଜ ତାକୁ ଛାଡ଼ି ଯାଇଚି, ଏହି ଦୁଃଖ କଷ୍ଟ ପାଇଁ । ବୁଢ଼ୀର ଗୁଣ ଅନୁଭବ କରିବାକୁ ଏତେ ବଡ଼ ଶିକ୍ଷିତା କୁମାରୀ କବିର ହୃଦୟ ବେଶ ଶକ୍ତ ଥିଲା । ସେ ବୁଝିଲା ଏ ଧନର କାଙ୍ଗାଳ । ଆଉ ଏକ ମିନିଟ ସମ୍ଭାଳିଲା ନାହିଁ । ଗୃଡ଼ଳ ଇତ୍ୟାଦି ସାଧାରଣ ପଦାର୍ଥ ଘରର ଗୁବିଠାମାନ ଶୀଘ୍ର ବାହାର କରି ତଳକୁ ଯାଇ ପିଉସୀ ହାତରେ ଦେଇ ଦେଲା । କହିଲା—"ନାନ ! ଏ ଗୁବିଠାମାନ ତୁମେ ରଖୁନାହଁ—ସେ ପ୍ରକାର ମୋତେ ସଦାବେଳେ ଖାଇ ପକାଉଚ । ତମେ ତାକୁ କନିଷ୍ଠପାଇ ଏଣିକି ଦେବ ।"

ବୃଦ୍ଧି ମଣିର କହିବା ପ୍ରକୃତିରେ ବୁଢ଼ୀର ଖଳରୂପର ଚିନ୍ତା ଦୂରିଗଲା । ସେ ଦାନ୍ତୁଶୀ ହସରେ କହିଲେ "ହଉ ହଉ ବୋମା—" ଏହା କହି ଆନନ୍ଦରେ ତାକୁ ନେଇ କାନରେ ଚାପିଲେ ।

କିଛିଦିନ ପରେ ଯେତେବେଳେ ତାଙ୍କର ଝିଅ ଘର ଉଜ୍ଜ୍ୱଳ କରି ପ୍ରକାଶିତ ହେଲେ, ସେତେବେଳେ ଶାନ୍ତ—ଆନନ୍ଦ ମଣି କୋଠରୀରୁ

ଲୁଅଟେଇ ଦୂର ହୋଇ ଗଲା । ଏ ଗୃହିଣୀଙ୍କର ବୟସ ୩୦ ପର୍ଯ୍ୟନ୍ତ । ଏ ନିଃସନ୍ତାନ ବଟେ; ତଥାପି ଅଶାନ୍ତତା । ତାଙ୍କର ହାତରେ କାଚ ଅଛି; ସେ ବିଧବାମାନଙ୍କ ଅପେକ୍ଷା ପରମଭାଗ୍ୟବତୀ ବୋଲି ତାଙ୍କର ଗର୍ବ ।

ହଠାତ୍ ଘରେ ପହଞ୍ଚି ମଣିକୁ ଦେଖି କହିଲେ, "ବୋଉ— ! ଏଇ କି ଲୋ ସେଇ ଗରିବ ଘର ପିଲାଟା ? କେଡେଟିଏ ତ ହୋଇ ଗଲାଣି । ପାଣ ପଠାଣ କୋଉ ଜାତିର କଣ ଜଣାଗଲା ବୋଉ ?"

ବୁଢ଼ୀଙ୍କୁ ପ୍ରଥମେ ଏହି କଥା ଶୁଣିବାକୁ ଟିକିଏ ଅଳୁରେ କଷ୍ଟ ହେଲା; ମାତ୍ର ସେ ଭଲ କେଲେ, "ହଁ, ଯାଉ କଣ— ମଣି କଣ ସେଇଥା ନୁହେଁ କି ? ମୋ ଝିଅଟ ମୁହେଁ ମୁହେଁ କହୁଚା ବାଲି, ସେ କାହିଁ ଦେଖାଇବ ? ଏସବୁ କଥା କହିବାରେ ଲାଜ କାହିଁ ?"

ମଣି ଏତେ ଆଦରରେ ପିଉସୀ ଝିଅ ଭଉଣୀକୁ ଓଳଗି ହୋଇ ଆନନ୍ଦରେ ଅପି ଯେଉଁ ଉପହାର ପାଇଲା; ତାହା ତାହାର ପ୍ରଥମ ସ୍ୱର୍ଣ୍ଣ ପଦକ । ତେବେ ସେ କଥାରେ ସେ ବିଚଳିତ ହେଲା ନାହିଁ । ଅଉ ଭି ଉପହାର ଅଛି, ପାଇବ ବୋଲି ଖୁସି ରହିଲା ।

ବୋଉ ଝିଅଙ୍କ କଥା ଶୁଣି ଉତ୍ତର କଲେ—"ହଁ, ହଁ, କରମ୍ପଟି ମୋର ଭାଇ ଥିଲା ବୋଲି ଠାକୁରରେ ରହିଲା । ନୋହିଲେ ତ ଶେଷ ହୋଇ ଯାଇଥାନ୍ତା । ସବୁରି ପରି ଏଇ ପୋଡ଼ାକପାଳୀ ପାଇଁ ବୁଲି ବୁଲି ଥକିଲିଣି ଲୋ ମା'—ଏ ରୂପକୁ ବର କୁଠୁ ଆସିବ ?"

ଏ ସବୁ ସତ୍ୟବାଦିତା ମଧ୍ୟରେ କି ଆନନ୍ଦର ମାଧୁର୍ଯ୍ୟ ଧାରା ଗୁପ୍ତେ ଗୁପ୍ତେ ରହିଥିଲା, ତାହା ଦୀର୍ଘନିଃଶ୍ୱାସ ଛାଡ଼ି ଅନୁଭବ କରୁଥିଲା ମଣି ! ତାର ଅଖି ଛଳ ଛଳ ହେବା ସାଙ୍ଗେ ସାଙ୍ଗେ ପିଉସୀଙ୍କ

ରୂପବତୀ କନ୍ୟା କହି ଉଠିଲେ—"କଲୋ ଝିଅ ! କାନ୍ଦେ ନାଁ, କାନ୍ଦେ ନାଁ—ଯୋଉ ଘର ଦୋଟେ ଛତରଖିଆରୁ ଅଣି ଘରେ ଏତେ ବଡ଼ କଷ୍ଟଚନ୍ତ, ସେ କଣ ଆଉ ପାଞ୍ଚ ପଚଶ ଟଙ୍କା ଖର୍ଚ୍ଚ କରବେ ନାହିଁ ?..." ଏଥର ଦୃଷ୍ଟି ପଡ଼ିଗଲା ମଣିର ଗହଣା ଉପରେ । "ମଲି ମୋର ! ଏତେ ଏଇ ପିତଳ ପାଳ ଉପରେ ଭଗ୍ନ ଦୃଷ୍ଟି ପଡ଼ୁଚ । କାନରେ ହାତରେ ଏମିତି ପିତଳ ଜିନିଷ ଲଗେଇବାକୁ ଅମେ ଶୁଣୁଁ ନାହୁଁ ଲୋ ମା' ! କରବ ତ କରବ ରୂପାରେ ଦଶଣ୍ଡ କରଚ, ସୁନାରେ, ଦଶଣ୍ଡ କରଚ । ଆହା ! ଗରବ ସୁନାରୂପା କୋଉଠୁ ପାଇବେଟି ? ଏଥର ଠାକୁରାଣୀଙ୍କର ଦୟା ହେଲା— ।

ମଣି ସବୁ ଶୁଣିଲା, ମାତ୍ର କନ୍ଦୁ କହିଲା ନାହିଁ । ମାଆ ଝିଅ କେତେ ଯେ କଣ କଥାବାର୍ତ୍ତା ହେଲେ ତାହା ଲେଖି ହେବ ନାହିଁ ।

ହାୟ ! ଯେଉଁମାନେ—

"ଅନାବ୍ରଣାଂ ବିବାହେଷୁ ଗର୍ଦ୍ଦଭାଃ ସ୍ତୁତିପାଠକାଃ ।
ଅନ୍ୟୋଃନ୍ୟେନ୍ତେ ପ୍ରଶଂସନ୍ତେ ଅହୋ ରୂପ ମହୋଧ୍ୱନି ।"

ସେମାନଙ୍କ ଦୃଷ୍ଟିରେ ପରମ ରମଣୀୟ କାନ୍ତି—ସୁନ୍ଦରୀ ରାଣୀ ମଣିର ମଣିମୟ ଦେହ ଯେ ଅସୁନ୍ଦର ନ ହେବ—ତାର ୩୦୦ ଟଙ୍କାର ଗହଣା ଯେ ପିତଳ ନ ହେବ — ତହିଁରେ ସନ୍ଦେହ କଣ ? କୌତୂହଳୀ ମଣି ସବୁ ଶୁଣି ଅଳ୍ପ ହସି ଅଳ୍ପ କାନ୍ଦି ଘରକୁ ଗଲା । ସ୍ୱାଇଙ୍କର ଚିଠି ଆସିଥିଲା, ସେ ଉତ୍ତର ଦେଇ ବସିଲା । ସେଥିରେ ପିଉସୀଙ୍କ ଝିଅ 'ଜନ୍ମ'ର ଆଗମନ ଲେଖି ଦେଲା ।

ଅକସ୍ମାତ୍ ମଣିର ଧ୍ୟାନ ଗୁରୁଙ୍କ ଶୀଘ୍ର ଭାଙ୍ଗିଲା ନାହିଁ । ଏ ଯୋଗ୍ୟା ପାତ୍ରୀ ମା ଝିଅ ବୁଝିଲେ ନାହିଁ ଯେ, ଏ ବାଳିକା ପରମ ସିଦ୍ଧି ତା—

କଥ । ଏହାର ସ୍ୱାଦ ପାଇଁ ଶତଶତ ବଡ଼ ବଡ଼ ଘରର ମୁଅ ଉଚ୍ଛନ୍ନ; ନାଏ ଫେରେଜ ସର୍ବଗୁଣ ସଂପନ୍ନ ଭାବରେ ତର ଖୋଜୁଛି । ଏ ଗୃହ-କୋଣ ଚେନା ମର୍ଜ୍ଜୀ ତାକୁ ଅସୁନ୍ଦର କୁତ୍ସିତ ବର୍ଣ୍ଣନା କରି ଦୂର୍ ଦୂର୍ କରୁଛନ୍ତି—ଯେପରି ସେ ଅଦୌ ଏମାନଙ୍କ ସଂସ୍କୃତ କଳ୍ପନା ଛୁଇଁ ପାରୁ ନାହିଁ । ହାୟ ! ହାୟ ! ହାୟ !

ଆଗରୁ ତ ସ୍ୱବକାଠିକି ବୁଢ଼ୀ ପାଇ ଯାଇଥିଲେ । ତେଣୁ ଆଜ କାଲି ପରଧନ ବଳିର ଜଣିର ଲୁଚାଇ ଲୁଚାଇ କରିବାକୁ ତାଙ୍କୁ ବେଶ ସୁବିଧା ମିଳୁଥିଲା । ସୁକର ବାକରଙ୍କ ପାରୁ ଶୁଣିଲେହେଁ ଏବଂ ସ୍ୱପ୍ନ ଦେଖିଲେହେଁ ମଣି କିଛି ମାଏ କହେ ନାହିଁ—ଚୁପ ହୋଇ ରହେ ।

ଧନେ,ମଣି ପଚାରି ଦେଇଥିଲା "ପିଉସି ! ସେ ମହଣକ ଡାଲି କଣ ହେଉଗଲାଣି ?" ଆଉ କହିବାକୁ ଅବସର ନ ଦେଇ ବୁଢ଼ୀ ଯାହା ବକିଥିଲା,ଘଡ଼ି । ଶୁଣିଲେ ହୃଦୟ କଣ ହେଇଯିବ ।

"କଲେ ତୋର ଏତେ ମଗଜ୍ର— ଏ ଘରେ ତୁ କଣ ରଜା—କଏ ଖାଇଗଲା କି ? ଆଲୋ ମୁଁ ଚୋରଣୀ ନୁହେ ଲୋ—ମୁଁ ଘର କରଚ ମ ମା'—ମୋ ଘରେ ତ ଅଗଣାବନ ସମ୍ପତ୍ତି ଥିଲା—କେତେ କାହାକୁ ବାଣ୍ଟି ଦେଇଚଲୋ ଝିଅ । ଆଜ ମୋର ସବୁ ମର ହଜିଗଲେ ବୋଲି ନାହିଁ । ଏ ସମ୍ପତ୍ତି ମୋର ମୁଢ଼ି ଝିଅକୁ ନାଅଣ୍ଡ—

ସେଠୁ ଝିଅ ବାହାର ପଡ଼ିଲେ—ମୋର ମାମୁଁର ତ ଘର—ଏ ଛତରଖାଇବ ଗଲା କଣ ? କଲେ, ଏହାର ଉଲେ ଚୂକର କରି ଆସିଚୁ କଲେ, ଶେଷ କାଳକୁ, ମଲା ଯା—

ପରଧନରେ ଲହଙ୍କ ଚହର
ଛଟଉଇ ନେଲେ ବଳନେ ମର

ଏ ମା—ତୁ ନିନ୍ଦିତ କଥା କହିବୁ ନାହିଁ—ତୁ ପତ୍ର ଛେଡ଼ଦେଲ ଝିଅ, ତୁ ବଡ଼ କଥା କାହୁଁ ଜାଣିବୁ । ପାଠରେ ନାଇଁ ଲୋ ମା ସେ କଥା ।

ମା ଝିଅ ଟିକ ମୋଫସଲ କଜିଆଖୋରଣି ପରି ତାକୁ ଅଉ କଥା କହିବାକୁ ଦେଲେ ନାହିଁ । ତାଙ୍କର ମନ, ଯଦି କିଛି ଉତ୍ତର କରନ୍ତା ତେବେ ଝାଡ଼ୁ ବାଡ଼ି ନେଇ ବାହାର କରିଦିଅନ୍ତୁ ।—

ହାୟ, ହାୟ ! ବୁଢ଼ା ସେ କିଏ,—ତାକୁ ତୁମେ ଚିହ୍ନିନାହଁ ? କାହା ପ୍ରତି ଅଜି ଏ ଅତ୍ୟାଚାର କରୁଚ; ମରିଯାଇଚ ବୋଲିଲେ ଆଉ ଯେ ଅଣାଇ ଦେବ ଏଥିପାଇଁ ପଡ଼ିରଥିଲା—ତୁମର ଏହି ଘୃଣିତ ଗାଳି ବାକ୍ୟକୁ ସେ ଖାତିର କରେ ନାହିଁ । ସେ ଇଚ୍ଛାକଲେ ଜଗତକୁ କହି ତୁମ୍ଭଙ୍କୁ ଧନରତ୍ନରେ ପୋତି ଦେଇପାରେ ତା' ଉପରେ ଏ ଭଳି କର୍କଶ ବାଣୀ । ଏ ଯେ ମୋଫସଲ ନୁହେଁ—ସେ ଯେ କଜିଆଖୋରଣୀ ନୁହେଁ—ସେ ଭଦ୍ରମହିଳା ।

କପର ଧନଯାଏ—ଚିତ୍ତ ଅଟେ, ଚିତ୍ତ ଯାଏ—ଧନ ଆସେ, ଏହା ମଣିର ହୃଦୟ ବୁଝିପାରିଲା ନାହିଁ । ସର୍ବଦା ପ୍ରଭୁଙ୍କୁ ଡାକିଲା—ସେ କପରି ଏ ଦୁଃଖରୁ ବାଞ୍ଛ ପାଇବ । ସମ୍ପାଦକ ପାଖରୁ ବାରମ୍ବାର ପତ୍ର ଯାଏ, ମଧ୍ୟ ଦିଏ । ମାତ୍ର କେବେ ଏ କଥା ଲେଖେ ନାହିଁ । କପରି ଲେଖିବ, କଣ ଲେଖିବ, ଠିକ୍ କରିପାରେ ନାହିଁ—ଲେଖିଲେ ସମ୍ପାଦକ କଣ ଭାବିବ ? ସେ ଯଦି ତା' କଥାରେ ବିଶ୍ୱାସ ସ୍ଥାପନ ନ କରେ—ତେବେ ? ପୁଣି ଏହି ଘର କଥାଗୁଡ଼ାକ କିଏ ଲେଖିବ ?

ଅସ୍ତେ ଅସ୍ତେ ଅଙ୍ଗୁଳି ପ୍ରବେଶାତ୍ପି ଚାହୁଁ ପ୍ରବେଶ ଘରୁ ମା ଝିଅ ମଣିକୁ ଦାସୀପରି ଚକ୍ଷୁରେ ଦେଖିଲେ । ତାର ସ୍ୱଭାବ—ସେ କୌଣସି କଥାର ଉତ୍ତର ଦେଇ ପାରେ ନାହିଁ କମା ଏହି ବିଶାଳ ସମ୍ପତ୍ତିର

ରକ୍ଷଣାବେକ୍ଷଣ ଭାର ହାତମୁଠାରେ ଥିଲେହେଁ ସେ ନିଜକୁ ସ୍ୱତନ୍ତ୍ରା ଭାବିପାରେ ନାହିଁ । ତାର ଲଜ୍ଜା ଅସେ । କେବେ ଆମଘର ବୋଲି ସେ ଏହି ବଦ୍‌ମୁଖାମାନଙ୍କ ନିକଟରେ କହେ ନାହିଁ । ତଥାପି ତା ଉପରେ ପ୍ରହାର । ଏପରି କେତେ ଦିନଯାଏ ବାଳିକା ଉପବାସରେ ଦିନବିତ କଟାଇ ଦିଏ—ଏପରି କେତେଦିନ ଅସେ, ସେ ଯନ୍ତ୍ରାରେ ଜଡ଼ ହୋଇ ଶୋଇ ଶୋଇ କାନ୍ଦି କାନ୍ଦି ଦିନଟାକୁ କଟାଇଦିଏ । ରାତି ହେଲେ ବୁଢ଼ୀର ଝୋଟକାଟିକୁ ଧରି ଶୋଇପଡ଼େ । ହାୟ ! ତାର ଏହି ଦୁଃଖମୟ ଜୀବନର କାହାଣୀ ଲେଖିବାକୁ ପଡ଼ିଲେ ତ ସେ ସଙ୍ଗୀହୀନ; ପୁଣି ଯେ ତାର ଭାଷା ଥିଲା ବ୍ୟକ୍ତ କରିବାକୁ, ତାହା ମଧ୍ୟ ପାଏ ନାହିଁ । କେବେ କେବେ ସରୋଜକୁ ଭାବିଭାବି, ଭବିଷ୍ୟତ୍ ସୁଖ କଳ୍ପନାରେ ଦିନଟି କଟାଏ ।

ଅତଏବ ଯନ୍ତ୍ରଣା ମଧ୍ୟରେ ମଣି ତାର ପ୍ରେମମୟ ଯନ୍ତ୍ରାରେ ଦେଢ଼ମାସ କାଳ କାଟି ଦେଲା । ବୁଢ଼ୀ ସାଙ୍ଗ ସାଥୀ ହୋଇ ଘରର ପୁରୁଣା ଚାକରାଣୀ ଠାରୁ କେତେଗୁଡ଼ିଏ କଥା ସଂଗ୍ରହ କରିଥିଲେ ଯେ, ବାବୁ ଏହି ମଣିଯୋଗେ ବଶ ହେଉ ନାହାନ୍ତି ! ତାକୁ ବଶ କଲେ ସେ ବିବାହ କରିବେ । ଆଉ ମଣିର ଇଚ୍ଛା ତାଙ୍କୁ ବଶହେବା ପାଇଁ ।

ବୁଢ଼ୀ ସେତକ ଶୁଣି ଖଡ଼ ଖଡ଼ ହେଉଥିଲା । ଦେଖିଲା, ମଣି ତାକୁ ଅସ୍ପୃଶ୍ୟ; ତାକୁ ପାଖକୁ ଡ଼ାକି ପଚାରିଲା—"ଲୋ ଝିଅ, କି ହୀନ କପାଳରେ ଜନ୍ମ ହୋଇଥିଲୁ—ଗୋଟିଏ ବର୍ଷ ଖାଇ ତ ଛତର ଯାଏ ଗଲୁ ! ଆଜି କଣ ମୋ' ବାପଘରକୁ ସେମିତି କରିବୁ ଭାବିଚୁ କି ? ଲୋ, ତୋର ଏତେ ମଗଜୁର ଯେ, ତୋର ସରୋଜଠେଇ ମନ ? ଯା, ଯା ଛି—ଛି—ଏକଥା ମନରେ ଧରନ୍ତି ଟିକି ? ସବୁକଥା ମୁଁ ବୁଝି ନାହିଁ । ତୁ ଏବେ ତୋ ବାଟ ଧ—ବୃଥାରେ ଏଠି ରହି ତୋର ଲାଭ କଣ ?"

ମଣି ଆଉ ସମ୍ଭାଳି ପାରିଲା ନାହିଁ, କାତର ସ୍ୱରରେ "ପିଉସି ! ଏହି ସବୁ କଥା ଛଡ଼ା ତୁମ୍ଭର ଅନ୍ୟ କିଛି କଥା କହିବାକୁ ମୋତେ ନାହିଁ । ସର୍ବଦା ଏପରି କଟୁ କଥା ମୋତେ କହି କି ସୁଖ ପାଉଛ ଭଲା ?"

ଏତିକି କହି କାନ୍ଦି ପକାଇଲା । ଆଜି ସେ ଏତେ ଲାଞ୍ଛନା ମଧ୍ୟରେ ଏହି ପଦକ କହିଲା, ମାତ୍ର ମା ଝିଅ ଗର୍ଜ୍ଜି ଉଠିଲେ—

"ଆଲୋ ମାଆ ଲୋ, ଜବରଦସ୍ତି ଏ ଛତର ଖାଇର ! ଏତେ ଝାଣୁଆ ! ଅରେ—ଭଲ କହିଲେ ଭେଲ ଲାଗୁଚ । ଏ କାଳ ତ ହୋଇଚ ତା । କହ ହଉ ଝିଅ—ମୋ' କଥା ମତେ ଫେରେଇ ଦେ—ଆଉ କହିବୁ ତୋଇଲେ—"

ଝିଅ ମୂର୍ତ୍ତି ଚମକି ପଡ଼ି କଥାରେ ବାଧା ଦେଇ କହିଲେ— "କଅଁଲୋ ! ତାକୁ ଛର କଥା କହିବେ ନାହିଁ—କଣ ସୁନ୍ଦର ରୂପ ଦେଖି, ନାଁ ବଙ୍ଗାଳୁଣୀ ଛଇ ଦେଖି ? ସବୁ ଖାଟି ଚ—ହକକଥା କହିଲେ କାନ୍ଦ !"

ମଣି କିଛିମାତ୍ର ଆଉ କହିଲା ନାହିଁ—ସେ ଏହି ଦେଢ଼ ମାସମଧ୍ୟରେ ଏପରି କେତେ ଶୁଣିଛି, କେତେ କାନ୍ଦିଛି । ତାହାର ଏହା ତ ପୁରସ୍କାର ! ସେ କାନ୍ଦଚ, କାନ୍ଦ ତ ତାର କେହି ମନା କରିବେ ନାହିଁ । ତେବେ ମଧ୍ୟ ଏ ରାକ୍ଷସପୁରୀରେ ସେ ମନା ସରା ! ଏ ବୁଢ଼ୀ ଏପରି ଗୋଟାଏ ସ୍ତ୍ରୀ ଯେ ସର୍ବଦା ଚବଣ ଘଣ୍ଟା ପାଟି ନ କଲେ ତାଙ୍କର ମୁକ୍ତି ନାହିଁ—ଧନ୍ୟ ତାଙ୍କର ପାଟି ! କେହି ପାଖରେ ନ ଥିଲେ ସୁଦ୍ଧା ମନକୁ ମନ ସେ କଥା ହେବେ । ଯଦି ଘରେ କୌଣସି ଠାରେ ଟିକିଏ କଣ ତାଙ୍କ ମତର ଓଲଟା ଦେଖିବେ, ତେବେ ଦିନ ସାରା ବକ ବକ ହେଉଥିବେ ଏବଂ ବକ ବକ ଦେଖି ବୃକ୍ଷର ପୂଜାରୀ ପଳାଇବାକୁ ଇଚ୍ଛା କଲେଣି; ମାତ୍ର

ମଣିର କୋମଳ ଇଙ୍ଗିତକୁ ଛାଡ଼ି ଭୁଲି ଯାଇ ପାରୁ ନାହାନ୍ତି । ଦିନ ରାତି ବକ ବକ ହେଲେ ମଣିଷ କେତେ ସହିବ—କେତେ ଶୁଣିବ ? କହିବାକୁ କାର ସାଧ୍ୟ ? କହିଲେ କାର ଚୂଟି ପିଠି ତ ରହିବ ନାହିଁ ।

ଯଦି କେହି ଖାଇ ଜାଣେ—ତେବେ ତାଙ୍କ ମା ଝିଅ; ଯଦି କେହି ଦାନ ଧ୍ୟାନ କରେ—ତେବେ ତାଙ୍କର ଘର; ଯଦି କେହି ସୁନ୍ଦର ତେବେ ସେ ନିଜେ । ସମସ୍ତଙ୍କର ଚାହୁନା । ନିଜେ ମାଙ୍କଡ଼ ପରି ସୁନ୍ଦର-ମାଏ—ଅପରର ନାକ କାର ବଂଶୀ ପରି—ଆଖି କାର ନୀଳକଇଁ ପରି, ମୁହଁ କାର ଗୋଲାପ କଢ଼ି ପରି—ପଦ୍ମ ଫୁଲ ପରି—ବାଳ କାର ଭ୍ରମର ପରି, ଦେହ କାର କେତକୀ ପାଖୁଡ଼ା ପରି—ଦାନ୍ତ କାର କୁନ୍ଦ କଢ଼ି ପରି; ଏଗୁଡ଼ାକୁ ସ୍ୱଦୃଷ୍ଟିରେ ବାହାଡ଼ାଦାନ୍ତ ଢେଙ୍କୋନାକୀ ବଳଦଆଖି ଲେଦରପେଟି ବୋଡ଼ାଗୋଡ଼ି ଅଦୌ ପସନ୍ଦ କରନ୍ତି ନାହିଁ । ତାଙ୍କ ପରି ଯାହାର ଅଙ୍ଗ ପ୍ରତ୍ୟଙ୍ଗ, ସେ ମହାମହିମାମୟୀ—ସୁନ୍ଦର ସଂସାର ରାଜରାଜେଶ୍ୱରୀ । ଧନ୍ୟରେ ସଂସାର ! ଏଗୁଡ଼ାକୁ କେବେ ତୋ କୋଳରୁ ବିଦାୟ ଦେବୁ ?

ମଣି ସକାଳେ ଟେଲିଗ୍ରାମ ପାଇଛି ଯେ, "ସରୋଜ ଏକା ଆଜି ଆସି ସନ୍ଧ୍ୟାବେଳେ ପହଞ୍ଚିବ ।" ସରୋଜ ଫେରି ଆସିବାର ପ୍ରଧାନ କାରଣ ମଣିର ଚଳଣିରେ ମାଧୁର୍ଯ୍ୟଶୂନ୍ୟତା ଦେଖି । ମଣିର ଚିଠି ଏବେ କପିର ବିପଦ ଗ୍ରସ୍ତର ଲେଖା ପରି ଜଣା ଯାଏ । ତାହା ପ୍ରତି ସରୋଜର ସନ୍ଦେହ ହେଲା । ସେ ଜାଣେ ଯେ, ତାର ପିଉସୀ ମୋଫସଲର ଲୋକ । କାଳେ ମଣିକୁ କିଛି ହଇରାଣ କରି ଥିବ ? ସନ୍ଦେହ ଦୋଳାରେ ଦୋଳାୟମାନ ହୋଇ ସରୋଜ ଘରକୁ ଫେରିଲା । ତାର ମଧ୍ୟ ଫେରିବାର ସମୟ ହୋଇଥିଲା । କାରଣ ୧୦ ଦିନ ହେଲା ସନେଦ ତାକୁ ଛାଡ଼ି ଭୁଲି ଯାଇଥିଲା । ସହରରେ ଆଉ ବେଶୀ ଦିନ ରହିବାର ପ୍ରୟୋଜନ ନାହିଁ—ହେଉ ସେ

ଦେଖିଲା । ମଣି ପାଇଁ ସବର ସଂବନ୍ଧ କରି ଆନନ୍ଦରେ ଫେରିଲା । ମଣିପାଇଁ କେତେକ ସୁନ୍ଦର ସୁନ୍ଦର ଜିନିଷ କିଣିଲା, ଆଉ କିଣିଥିଲା ତାର ପିଉସୀ ଝିଅ ଭଉଣୀ ଅସିତ—ଦେଖିବାପାଇଁ ଏଣୁ ତେଣୁ କିଛି କିଣି ଘରକୁ ଫେରିଲା ।

ମଟରକାରଟା ତା ଦେହିତ ରହିଥିଲା । ସକାଳେ ଟେଲିଗ୍ରାମ ପାଇ ମଣିର ଆନନ୍ଦ ଆସି ଥିଲା । ସେ ଛନ ଛନ ହେଉଥିଲା ଭାଇକୁ କେତେ ବେଳେ ଦେଖିବ—ମାତ୍ର ପିଉସୀଙ୍କ ସ୍ନେହସ୍ପର୍ଶରେ ତାର ହୃଦୟ ଭାଙ୍ଗି ପଡ଼ିଲା । ତାକୁ ଯେ "ଅପଯ— * * * * ପ୍ରଭୃତି ଗାଳି ଦେଲେ ତାର ମନରେ ତାହାଠୁଁ ବେଶୀ ବେଦିଲା । ତେବେ ସେ କଣ ଏହିପରି ? ଜୀବନଟାକୁ ଏହି ପାପ ମଧ୍ୟରେ ଜୀବନ୍ତ ପକାଇବାର ପ୍ରୟୋଜନ କଣ ? ଭାବିଲା ନଷ୍ଟ କରିଦେବ, ମାତ୍ର ପୁଣି ଭାବିଲା ନା—ଏହା ଯେ ଜଣଙ୍କ ପାଇଁ ଉତ୍ସର୍ଗୀକୃତ । ତାହାର ହୃଦୟରେ ଆକାଶ ପାତାଳ ଚିନ୍ତା ଉଠିଲା । ଅଭିମାନରେ, କୋହରେ ତାର ଛାତି ଫାଟିଗଲା ପରି ଲାଗିଲା । ତାର ମନ ହେଲା, ଏହିକ୍ଷଣି ସେ ମରିଗଲେ କ୍ଷତି କଣ ହୁଅନ୍ତା ? ସବୁରି ତ ତାର ପିଉସୀକୁ ଧରି ଗୋଟିଏ ବିବାହ ହୋଇ ମହାସୁଖରେ ରହନ୍ତା, ଆଉ କଣ ? ମାତ୍ର ପୁଣି କିଏ ଯେପରି ତାକୁ ନାହିଁ କଲା, "ନା—ସେ ଆତ୍ମହତ୍ୟା ନିତାନ୍ତ ଗୁରୁପାପ । ଅନ୍ଧକାର ପରେ ଆଲୋକ ଅଛି; ସହିଯାଅ କୁମାରୀ, ସହିଯାଅ । ତୁମର ଜ୍ଞାନ ଅଛି, ତୁମକୁ ଏହି ପାଷଣ୍ଡ ହୀନ ଅବିବେକିନୀ କେହି 'ଅପଯ' କହିଲା ବୋଲି ତୁମେ ବିଚଳିତ ହୁଅନା ମା ଜାଣିଥାଅ—ତୁମର ଆତ୍ମପ୍ରତ୍ୟୟ ଯେବେ ତୁମକୁ ପାପୀ ବୋଲି ବିଶ୍ୱାସ ଦେଉ ନାହିଁ, ତେବେ ତୁମେ ଅପର କାହାର କେଉଁ ହୀନ ମନୁଷ୍ୟର କଥାରେ ନିଜକୁ ପାପୀ ବୋଲି ବିଶ୍ୱାସ କର ନାହିଁ ।"

... ମନରେ କେତେ ଭାବ ଆସିଲା । ମାତ୍ର ଆଖିର ଲୁହଧାର କୋମଳ ବଦନର ଅକଣ୍ଟକିତ ଶାନ୍ତ ଚକ୍ଷୁରୁ ବନ୍ଦ ହେଲା ନାହିଁ । ଖାଇବାକୁ ଗୁହର

ହୋକା କେତେ ଡାକଲା, ମାତ୍ର ସେ ଉଠିଲା ନାହିଁ । ନସ୍ତ୍ରବ ଭାବେ ଭୟଙ୍କର ଅଭିମାନ ସମୁଦ୍ରରେ ବୁଡ଼ି ରହି ପଡ଼ି ରହିଲା । କଳ୍ପନା କଲା—ସେହି ଦାରିଦ୍ର୍ୟ ପୀଡ଼ାରେ ତାର କେତେଦିନ ପୂର୍ବେ ମୃତ୍ୟୁ ହୋଇ-ଥିଲେ କ୍ଷତି କଣ ହୋଇଥାନ୍ତା ? ଏହି ତିରସ୍କାର, ନିର୍ମମ ଅପମାନ ଅପେକ୍ଷା ତ ବରଂ ଭଲ ହୋଇଥାନ୍ତା । ତେବେ ବିଧାତା ତାକୁ ନ ମାରି ଏପରି ଦାବ ଦହନ କରିବାକୁ ରଖିଲା କାହିଁକି ? କାନ୍ଦୁ କାନ୍ଦୁ ଭାବୁ ଭାବୁ ଶୋଇ ପଡ଼ିଲା ।

ସନ୍ଧ୍ୟାକ ଘରେ ଚୁପ୍ କରି ପଦ୍ମନି ପିଣ୍ଡାରେ ପାଦ ଦେଉ ମାତ୍ରେ ଶୁଣିଲା—କଲ ଗୋଳର ବିକଟ ଶବ୍ଦ । ତାର ମନରେ ଆସିଲା, ବାସ୍ତବରେ କଳ୍ପନାଟା ଠିକ୍ । ଅହା ! କୁସୁମକୋମଳା ମଣିଟିକୁ ମୋର ତ ଏହିପରି କଣ କହି ଝାଉଁଳାଇ ଦେବେଣି !

ଅଜ ଟିକିଏ ପାଖକୁ ଗଲା—ଶୁଣିଲା ମା' ଝିଅ ପଂଟିମାନ ଓସାରି ଏପରି କଥା ସବୁ କହୁଚନ୍ତି, ଯହିଁରେ ପଡ଼ୋଶୀର ଖଣ୍ଡ ଦୁଲୁ ଦୁଲୁ କରୁଚି ।

ବୁଢ଼ୀ ଏଠି ପାଣି ଟିକିଏ ଢ଼ାଳଦେଇ—ସେଠି ଖଡ଼ିକା ଝାଡୁଟା ଟିକିଏ ମାରିଦେଇ କହି ଚାଲି ଯାଉଚି—"ଏ ଜାଉଁଳଗା ପୋଡ଼ପାଡ଼ ଘରେ ପାଣି ଟିକିଏ କଣ ଅଛି ? ସମସ୍ତେ ତ ନବାବ । ଆଜ୍ଞେ ଖଟେଇ ଖଟେଇ ମାରି ଦେବେ କେ ? ମଣିଷ ନଯାଉଥିବରେ ହାତ ନଦେଲା ତା ନ ହେଲା । ମୋ' ମା'ଲୋ—ଜେମାମଣି । ଏ ତ ସତେ ଜେମାମଣି ଟିଏ ! ଇଏ ଗେଲବସର ହୋଇ ବୁଝିଲେ । ତାଙ୍କ ସାଙ୍ଗରେ ସ୍ୱଭାବର ପୂଜାରୀ ସାଙ୍ଗ ହୋଇ ବୁଝିଲେ । ରୂପରେ ବାପା ରୂପ । ଆମେ ତମ ଭଲପାଇଁ କଥା କହିଲୁ । ଯେ ଯେତିକର ଲୋକ ସେତିକରେ ଚଳ । କାଲି ତ ଛତର ଖାଇ ବାରଦ୍ୱାର ଶୁଣ୍ଢିପିଣ୍ଡା ହେଉଥିଲ, ଆଜ ରାଜଭୋଗ

କଲ ବୋଲି କଣ ବଡ଼ଲୋକ ହୋଇଗଲ । ବଡ଼ ଘରେ ଅଛ ବୋଲି ପଦକ୍ତିକୁ ଜଗି ଚଲିବ କି ?

ସରୋଜ ଆଉ ଶୁଣିପାରିଲା ନାହିଁ । ପାଟିର ଧାରା ଲମ୍ବି ଲମ୍ବି ଯାଉଥିଲା । ସେ ସମସ୍ତ ବାକ୍ୟବାଣ ତାର ସ୍ନେହମୟୀ ଉପରେ ପଡ଼ୁଥିବାର ସେ ଶୁଣିଲା । ତାର ମନ ବଡ଼ ଦୁଃଖ ହେଲା, ସେ ବଡ଼ ଭୁଲ୍ କରିଛି । ସେ ଜାଣିଶୁଣି ନାଗସାପ ଗାତରେ ହାତ ଭରତ କରିଛି—ସେ କାମୁଡ଼ିବ ନାହିଁ ତ କିଏ କାମୁଡ଼ିବ ?

ତା ପରେ ପିଉସୀଙ୍କ ଝିଅ ଭଉଣୀ ମହାଶୟା ଯାହା କହିଲେ, ତାହା ଶୁଣି ତାର ହୃଦୟ ବିଦାରି ହୋଇଗଲା । ଭାବିଲା, ସେମାନଙ୍କୁ ଏହି ମୁହୂର୍ତ୍ତରେ କାଳବିଳମ୍ବ ନ କରି ବିଦାୟ କରିଦେବି; ମାତ୍ର ପୁଣି ଧୈର୍ଯ୍ୟଧରି ରହିଲା । ଭାବିଲା—"ମଣି କପରି ସହିଛି—ମତେ ତ ଅଦୌ ଲେଖିଲା ନାହିଁ । ଅହା, କି ସହଣି ପିଲା ? ଧନ୍ୟ କୁମାରୀ !" ତାର ଆଖି ସଜଳ ହେଲା । ଏଥର ସେ ଧୀରେ ଧୀରେ ଉପରକୁ ଉଠିଲା । ଦେଖିଲା, ସୁକର ଠୋକା ଦବ ପିଢ଼ାପାଖରେ ଖାଙ୍କା ପେଟରେ ଶୋଇଛି; ତା ମୁହଁ ଦେଖିଲା, ସେ ଶୁଖିଲା । ଭାବିଲା, ପିଲା ଅଦୌ କିଛି ଖାଇନାହିଁ । ତାକୁ କୋମଳହସ୍ତ ସ୍ପର୍ଶ କରି ଉଠାଇ କହିଲା, "ଦବ, ଉଠିନ୍ତୁ—" କୋଳକୁ ଟାଣି ନେଲା । ଧୀରେ ଧୀରେ ମୂଳରୁ ଶେଷଯାଏ ତାକୁ ସବୁ-କଥା ପଚାରିଲା । ଦବଟି ବଡ଼ ସୁନ୍ଦର ପିଲା । ସେଇଟି ସରୋଜ ଆଉ ମଣିର ଆଦରର ଧନ । ଠିକ୍ ପୋଷିଲା ହରିଣଛୁଆ ପରି । ଦବ କାନ୍ଦି କାନ୍ଦି ସବୁ କଥା କହିଗଲା । ମଣିର ଅପମାନ କଥା ଶୁଣି ସରୋଜ ସମ୍ଭାଳି ପାରିଲା ନାହିଁ, କାନ୍ଦି ଉଠିଲା; ମାତ୍ର ସମ୍ଭାଳି ନେଲା । ଧୀରେ ଧୀରେ ଶୋଇବା ଘରେ ପଶିଲା ।

ଦେଖିଲା—ମଣି ବାହାର ପାଖକୁ ମୁହଁ କରି ଶୋଇଛି—ତାର ଆଖିରୁ ଲୁହ ବୋହି ବୋହି ଆଖି ଫୁଲି କଳା ପଡ଼ିଯାଇଛି—କୁନ୍ତଳ

ଅଲ୍ କାପୁଛି । ଲୁଗା ପଟା ଅସଂଯତ—ମୁହଁ ଶୁଖି ଯାଇଛି—ଦେହରେ ଯେପରି ପ୍ରାଣ ନାହିଁ ।

ତାର ମନେ ହେଲା, "ଏଡ଼ି ବିକଚ ଶତଦଳଟିକୁ ମୁଁ କାହା ପାଖରେ ଦେଇଗଲି—ସେ କୁମିର୍ କାଠ, ସେ ତାର କି ତତ୍ତ୍ୱ ନେବ ? ଆହା, ମୋର ଜୀବନର ଶ୍ରେଷ୍ଠ ଧନଟିର କଣ ଏହି ଅବସ୍ଥା ? ତେବେ ବିନୋଦ କଥା ଠିକ୍— ?"

ବ୍ୟଥିତ ସରୋଜ କାନ୍ଦ କାନ୍ଦ ଯାଇ ମଣିକୁ କୋଳକୁ ଟାଣି ଆଣିଲା । ମଣିର ଆଖି ଫିଟିଗଲା । ସେ ଯାହା ଦେଖିଲା, ତାହା ହୃଦୟ-ସ୍ପୃଷ୍ଟ ଫୁଟିଉଠିଲା । ପ୍ରାଣରେ ପୁଲକ ଆସିଲା । ମନ ଦୁଃଖ କ୍ଳେଶ ଅଭିମାନ ଭୁଲିଯାଇ ଆନନ୍ଦରେ ନାଚିଲା; ମାତ୍ର ଅଭିମାନିନୀ ସରୋଜକୁ ଭୁଜ ଡୋରରେ ହୃଦୟ ପାଖକୁ ଟାଣି ଆଣିବାକୁ ଇଚ୍ଛା କଲା, ମାତ୍ର ପାରିଲା ନାହିଁ—ତାର ଆଖିରୁ ଠପ୍ ଠପ୍ ଲୁହଧାର ବହିଗଲା ।

ବହୁ ବେଳ ଧରି ଦୁହେଁ ଦୁହିଁଙ୍କୁ ଧରି କାନ୍ଦିଲେ । ଏହି କ୍ରନ୍ଦନରେ ବହୁଦିନର ଅଭିଶାପ ଦୂରହେଲା ପରି ! ସରୋଜ ମଣିକୁ କିଛି ପଚାରିଲା ନାହିଁ; ମାତ୍ର ଏତିକି କହିଲା—"ମଣି ଖାଇଚୁ— ? ମୁହଁ ତ ଶୁଖିଲା ଦିଶୁଚ ?"

ଆଜ ନିଦ ଭାଙ୍ଗିବା ସଙ୍ଗେ ତାର ପ୍ରିୟଦର୍ଶନ ହେବ; ସେ ଆଦୌ ଭାବି ନଥିଲା; ମାତ୍ର ପ୍ରଭୁଙ୍କ କରୁଣାକୁ ସେ ଶତ ଶତ ଧନ୍ୟ ବାଦ ଦେଇ କହିଲା—"ମୋର ଦେହ ଖରାପ ଥିଲା ବୋଲି ଖାଇ ନାହିଁ ।" ଏତିକି କହି ସେ ଉଭୟଙ୍କ ପାଇଁ କିଛି ବନ୍ଦୋବସ୍ତ କରିବା ପାଇଁ ତଳକୁ ଗଲା । ଅଳାଜୁକି ଝିଅଟା ତମାଲ ପାରିଲା ନାହିଁ—ଝଟ୍ କିନା କହିଦେଇ ଆସିଲା—ଭାଇ ଅଇଲେଣି । ବୁଢ଼ୀ ଏଥର ଚମକି ପଡ଼ିଲେ । ତେଣେ ମଣି ବରୁବରରେ ଖାଦ୍ୟବାଣ ସବୁ ପ୍ରସ୍ତୁତ କଲେ । ହାୟ, ଏତେ

ଅପମାନରେ ସୁଦ୍ଧା ଯେ ଛଳ କରୁ ନାହିଁ, ଯାର ଏ ବିରାଟ ସଂପତ୍ତି ନଖାଗ୍ରରେ—ଜଣେ ତା' ପାଇଁ ସମସ୍ତ ବ୍ୟୟ କରିପାରେ—ସାକ୍ଷୀ ତାଠାରେ ତୁମର ଏ କି ବିରୋଧ ?

ସରୋଜ ମଣିକୁ ଆଉ କୌଣସି ବିଷୟ ପଚାରିଲା ନାହିଁ—ଦିବଠାରୁ ସେ ମାସସବୁର ପଞ୍ଜିକା ପାଇଯାଇଥିଲା । ସମସ୍ତେ ଉପରେ ରଦ୍ଧ ସରୋଜ ଆଣିଥିବା ମିଷ୍ଟାନ୍ନ ଜଳଖିଆ କଲେ । ଏମାନେ ତ ସମସ୍ତେ ପିଲା । କାହାର ଗତ କଥା ପ୍ରତି ଆଦୌ ଦୃଷ୍ଟି ରହିଲା ନାହିଁ । ପୂଜାରୀ ମହାଶୟ ପ୍ରହଷ୍ଟାର ସୁଦର୍ଶନ ହେଲେହେଁ ତାଙ୍କ ପଖାଳକୁ ସେ ଛାଡ଼ି ପାରିଲେ ନାହିଁ । ଜଳଖିଆ ତାଙ୍କ ଦେହରେ ନ ଯିବା କଥା ତାଙ୍କ ପୁରାଣରେ ପ୍ରସିଦ୍ଧ ।

ପିଉସୀ ଭଉଣୀଙ୍କ ପାଖକୁ ଟୁବ୍ ଥୋଡ଼ା ପଠାଇଦେଲେ । ସରୋଜ ତଳକୁ ଗଲା । ଏଥର ପିଉସୀଙ୍କର ସଜ ସଜ ହେଲା ଶୁଖିଲା ଆଖିଠାମାନ, କାନ୍ଦିଲା ପରି ହୋଇ କେତେ କହିଲେ— "କୁଆଡେ ଯାଇ ବୁଲୁଚୁରେ ବାପା, ବୟସ ହେଲା—ବଡ଼ ସିଭିଟିଏ ହୁଅନ୍ତୁ, ଘର ଦୁଆର କରନ୍ତୁ—ଅଭିଆଡ଼ ହୋଇ ଏମିତି କେତେ କାଳ ରହିବୁ କହିଲୁ ? ମର୍ଦ୍ଦପୁଅ । କୁଆଡ଼କୁ କନ୍ୟା ଅପୂର୍ବ ? ବାସ୍ତୁମନ ସ୍ଥିର କର । ଏମିତି ପଗଲା ପରି ହୁଅନି—ନଣଦାଡି ତ ହେଲା, ଆଉ ବଭିରେ ସୁନ୍ଦର କଣ ରହିବ ? ବସ୍ତ ହେଲେ ତ, ଆଉ କରଣ ଘର ରଙ୍କାଘର ପରି ଅମଘର ନୁହେଁ—ଅବଶ୍ୟ ୩ ବର୍ଷ ତ ଯିବ ?"

ଆତୁର କ୍ରନ୍ଦନ ସ୍ୱରକୁ ଲମ୍ବା କରିଦେଇ କହିଲେ—"ହଇରେ ବାପା ! ଏ ପିଲାଟିକୁ ଆମର ରଖିବାର ଲୋଭ କଣ କହିଲୁ ବାପା ? ତାକୁ ଛନ୍ଦିଦବାକୁ ଭାବିଥିଲୁ । ବର କଣ ସହଜରେ ମିଳୁଚନ୍ତି—ଗୁଣ ଥିଲେ

ହବ କି—ରୂପଥିଲେ ହବ କି ? ସେ ତ ସାଆନ୍ତଅ ଜାତ । କଣ ଖାଇଲେ ହେବ କି ? ଏବେ ମୋର ଗୋଟିଏ କଥା ଶୁଣ । ମୁଁ ଏ ବିଷୟପାଇଁ ଜ୍ୟେଷ୍ଠ ସାଆନ୍ତ ଘରେ ଗୋଟିଏ ପିଲାକୁ ଠିକଣା କରିଚି—ଦି ଅକ୍ଷର ପଢ଼ିଚି—ତେବେ ଗୋଟିଏ ହାତ ଛୋଟା । ହେଲେ କଣ ହେବ ପୁରୁଷ ପୁଅ । ତାଙ୍କର ରୂପ କିଏ ଖୋଜୁଛି ? କଣ କହୁଚୁ କହିଲୁ—ତାଙ୍କୁ ଖଂର କର ଏ କାମରୁ କମିତ ବାହା ପାଇବା ? ଏ ଅଲକ୍ଷଣୀ ମୋ ପିଲାକୁ ସର୍ବ-ନାଶ କଲା !"

ଆଜି ଶୁଣିବାକୁ ସରୋଜ ଅବସର ଦେଲା ନାହିଁ—ସେ ଅଳଣୀଙ୍କ ସେ ସ୍ଥାନ ପରିତ୍ୟାଗ କଲା । କି ଉପାୟରେ ଏମାନଙ୍କୁ ଦୂର କରିବ, ଏହାହିଁ ଭାବିଲା । ହଠାତ୍ ଛାଡ଼ିଦେଲେ ଲୋକେ ଭିନ୍ନ ଭାବିବେ, ତେବେ ଆଉ ମାସେ ପକ୍ଷେ ଏମିତି ଯାଉ । କୌଶଳରେ ଏମାନଙ୍କୁ ଶୀଘ୍ର ଦୂର କରିବା ପ୍ରୟୋଜନ ।

ବୁଢ଼ୀର କଥା ଶୁଣି ସରୋଜର ମନକୁ ଯେପରି ବାଧିଲା, ସେପରି ମଧ୍ୟ ହସ ମାଡ଼ିଲା । ହାୟ, ତାର ମଣିକୁ ଏପରି ତ କେତେ କଥା ଏମାନେ କହୁଥିବେ । 'ମଣି ମୋର ମଣି—କମ୍ ସହି ନାହିଁ । ଅହା, ମୁଁ କି ଭୁଲ୍ କରିଛି ?—

\+ + + +

ସରୋଜ ଏତେଗୁଡ଼ାଏ ଦିନ ମଣିକୁ ଘରେ ଏକୁଟିଆ ଛାଡ଼ି ଦେଇ ମଫସଲରେ ବିନୋଦ ସହିତ ବୁଲୁ ନ ଥିଲା । ଏ ରାଜ୍ୟ ସେ ରାଜ୍ୟ ହୋଇ ବର ଖୋଜୁ ଥିଲା । ଯେଉଁ ବରଟିକ ଠିକଣା କରି ଆସିଲା, ସେଥିରେ ତାର ମନ ମାନିଥିଲା । + + +

ମଣି ତାଳକୁ ଆଖି ଖାଇବା ପିଇବାକୁ ବୁଝୁଥିଲେ—ସରୋଜ ଉପରେ ବସି ଭାବୁଥିଲା ମଣିର ଭବିଷ୍ୟତ। ପିଲାଟି ସୁନ୍ଦର, ଓକିଲାତି କରୁଛି— ଅବସ୍ଥାସଂପନ୍ନ ଘର—ବାପ,ମା ଅଛନ୍ତି। ତେବେ ମଣିର ଆଉ ଦୁଃଖ କଣ ?

ସେ ଏହିପରି କେତେ କଥା ଭାବୁଛି, ଏହି ସମୟରେ ମଣି ପହଞ୍ଚିବା ସଙ୍ଗେ ସଙ୍ଗେ ସରୋଜ କହିଲା—"ମଣି, ମୁଁ ଯେ ଏତେ ଦିନ ବାହାରେ ଘୂରୁଥିଲି ତାର କାରଣ କଣ ତୁ ଜାଣି ପାରୁଥିବୁ ତ ?"

ମଣି କିଛି କହିଲା ନାହିଁ—ତଳକୁ ମୁହଁ ପୋତି ଛିଡ଼ା ହେଲା। ସେଠୁ ସରୋଜ କହିଲା—"ମୁଁ ଆଉ ଲୁଚାଇବି କାହିଁକି—ତୁ ତ କିଛି ପିଲା ନୁହଁ, ତେବେ ତୋର ଶାଶୁ ଘର ଠିକଣା ହେଲା। ବିନୋଦ ଆଉ ମୁଁ ନିର୍ବାଚନ କରି ଆସିଛୁ।"

ମଣିର ଆଖି ଲୁହରେ ଭରି ହୋଇଗଲା—ମାତ୍ର ସେ ନିଜକୁ ସମ୍ଭାଳି ନେଇ କହିଲା—"ତୁମର ଇଚ୍ଛା ଯାହା କରିବ, ସେଥିରେ ମୋର କଣ ଅଛି ?" ଏତିକିମାତ୍ର କହି ସେଠୁ ଉଠି ଚାଲିଗଲା; ଆଉ ଭାବିଲା,"ଭଗବାନ୍ ଅଭାଗୀ କପାଳରେ ବହୁତ ଦୁଃଖ ଲେଖିଛନ୍ତି—ଜୀବନରେ ମୋର ସୁଖ କେଉଁଠି ?" ଏହିକଥା ଭିତରେ କି ରହସ୍ୟ ଥିଲା ସେ ଜାଣେ; ବିନୋଦ ଜାଣେ, ଶୁଷ୍କ କାଠ ପଥର ହୃଦୟ ସରୋଜ କାହୁଁ ବୁଝିବ ?

ସରୋଜ କିଛି ଭାବିଲା ନାହିଁ—ଏକ ଅପେକ୍ଷାରେ ରହି ରହିଲା। ମଣିର ବରଘର ପତ୍ର ଦେବାକୁ ସ୍ଥିରକୃତ କରିଥିବାରୁ; ତେଣୁ ସେ ଆଉ ସେ କଥା କିଛି ନ ପକାଇ ତୁନି ରହିଲା।

ଦୁଇ ଦିନପରେ ଦଶ ଅଣି ଖଣ୍ଡେ ମୁଦ୍ରା ଟଙ୍କାଟି ସରୋଜ ହାତରେ ଦେଲା। ସେ ଦିନ ସରୋଜର ମନ କେଜାଣି କାହିଁକି ସୁଖ ନଥିଲା— ତେବେ ଚିଠି ଖୋଲି ପଢ଼ିବା ସାଙ୍ଗେ ସାଙ୍ଗେ ତାର ମନ ମଧ୍ୟ ଅତିର

ଦୁଃଖରେ ଭର ଉଠିଲା । ତେବେ କଣ ମଣିର ଗ୍ରହ ଖରାପ ? ଯେଉଁ ଡ଼ାଳ ଧଇଲେ ସେ ଡାଳ ଛିଣ୍ଡୁଛି । କି ଅସମ୍ଭବ କଥା ? ତାର କୋମଳ ହୃଦୟ ଫାଟି ପଡ଼ୁ ପଡ଼ୁ ଚମକି ଉଠିଲା । କି ପରିତାପକାମ, କି ଲଜ୍ଜାକ କଥା ! ହାୟରେ ସଂସାର, ତୋର କେତେ ଭଳର ଲୀଳା ନିତ ଅଦ୍ଭୁତ ଲାଗିଚ, କିଏ ତା ବୁଝିବ ?

ଚିଠିଟି ଏ ପାଖ ସେ ପାଖ କେତେ ଲେଉଟାଇଲା, ଥରେ ପଢ଼ିଲା, ଫିଙ୍ଗି ଦେଲା—ଦୁଇଥର ପଢ଼ିଲା, ଫିଙ୍ଗି ଦେଲା—ପୁଣି ଅଉଥରେ ପଢ଼ିଲା, କାଳେ କିଛି ସେ ଭୁଲ ପଢ଼ିଥିବ । ମାତ୍ର ବହୁ ଥର ତାକୁ ଏକା ଏକା ଜଣା ଗଲା । ତେବେ ମଣିର ଭାଗ୍ୟ ଅପ୍ରସନ୍ନ । ମଣି ତେବେ ଘୃଣ୍ୟାଳୁଣୀ ? ହେଲା କଣ–ସେ ଘୃଣ୍ୟାଳୁଣୀ ହେଉ, ସମାଜଚ୍ୟୁତା ହେଉ—ସରୋଜ ନିକଟରେ ତାର କଣ ସ୍ଥାନ ନାହିଁ ? ଭାବିଲା—ମାତ୍ର କିଛି ଠିକ୍ କରି ପାରିଲା ନାହିଁ । ଚିଠିରେ ଲେଖା ଥିଲା—

ଭାଇ ସରୋଜ,

ମୋର ବିବାହ ପାଇଁ ତୁମେ ଯେ ସବୁ ଠିକ୍ କରିଗଲ, ତାହା ଏବେ ଅଶାନ୍ତିକଲ୍ପନାରେ ଆସି ଉପସ୍ଥିତ । ତୁମେ ଭଲ କରି ଜାଣ ଯେ, ମୁଁ ମୋର ବାପ, ମାଆଙ୍କର ଇଚ୍ଛା ବିରୁଦ୍ଧରେ କିଛି କାମ କରିବି ନାହିଁ, କାରଣ ଆମର ସମାଜ ଅଛି—ଆମର ଜାତି ଅଛି । ଯଦିଓ ସମାଜର ଉକ୍ତ ସେ ବାହୁକୁ ନ ଥାଇପାରେ; ମାତ୍ର ତାର ମହତ୍ତ୍ୱ ଅଛି ।

ମୋର ପିତା ତୁମ ମଣି ବିଷୟରେ କୁଆଡ଼ୁ କେତେ କଥା ସଂଗ୍ରହ କରିଚନ୍ତି । ମୁଁ ଲେଖି ପାରିବି ନାହିଁ, ତୁମ ମନରେ କଷ୍ଟ ଆସିପାରେ; ତେବେ ଏତିକି କହିପାରେ ଯେ ତାର ଜାତି ନାହିଁ—ତେଣୁ ମୋର ବିବାହ ସେଠି ହୋଇ ପାରିବ ନାହିଁ । ବୋଧହୁଏ ମୋର ପିତା ତୁମ୍ଭଙ୍କୁ

ନିକଟରେ ସେ ବିଷୟରେ ସବୁ ଲେଖିଛେ । ତୁମ ମନରେ ମୋ ପ୍ରତି କାଳେ କିଛି ମନ୍ଦ ଧାରଣା ଆସିପାରେ, ଏଇଥିପାଇଁ ଏ ପତ୍ର ଲେଖିଲି— ମତେ କ୍ଷମା କରିବ । ଇତି—

ତୁମର
ମର୍ଦ୍ଦରାଜ ସିଂହ

ସେ ମର୍ଦ୍ଦରାଜସିଂହ ସ୍ଵାକ୍ଷରିତ ପତ୍ରଟି ପାଠ କରିପାରିଲା; ମାତ୍ର କଥାଟା କିଛି ବୁଝି ପାରିଲା ନାହିଁ । ମଣିର ଜାତି ନାହିଁ, ଏହାର ଅର୍ଥ କଣ ? ସେ ଗରିବଥିଲା, ଭିକ ମାଗି ତ ନାହିଁ ମାଗିଲେ ତା କଣ ହେବ ? ସେ ପୋଲିସ ଦ୍ଵାରା ପିଲାଦିନେ ମିଛରେ ଧରା ହୋଇଛି, ଏଥିରେ ଜାତି ଯିବାରକଥା କଣ ଥିଲା ? ସେ ମିଶନ ସ୍କୁଲ ବୋର୍ଡିଂରେ ଥିଲା, ଏଥିରେ ବୋଧହୁଏ ତାର ଜାତି ଯାଇଛି—ଜାତି ଗୋଟାଏ କଣ ? ସେ ଗଲା କିପରି ? ସ୍ତ୍ରୀ ଜାତିର ସ୍ଵଭାବ କଣ ତାର ଲୋପ ହୋଇଛି ? ଛି—ଛି, ମର୍ଦ୍ଦରାଜ ତେବେ ପାଠ ପଢି ଏତେ ନିମ୍ନରେ ?

ସରୋଜ ଏତିକିବେଳେ କଣ ଭାବିଲା, ତା ମନ ଜାଣେ, ମାତ୍ର ଅସ୍ଥିର ହୋଇ ବସି ପାରିଲା ନାହିଁ । ସବୁ ମଣିର ଭାଗ୍ୟକୁ ଦୋଷ ଦେଲା— ଶେଷକୁ ହୁଁକାର କରି ଉଠିଲା—ସରୋଜ ଜଗତର ଧ୍ଵଂସ ଯାଏ ଚେଷ୍ଟାକରି ମଣିକୁ ସୁପାତ୍ରରେ ନିସ୍ତାର ଦେବ—ଦେବ—ଦେବ ।

ମଣିକୁ କିଛି ନ କହି ପୁଣି ଥରେ ସେ ବୁଲିଛି—ଏହିପରି କେତେ କଥା ଭାବି ଠିକ୍ କଲା । ତାକୁ କଣ କହି ବିଦେଶକୁ ଯିବ—ପୁଣି କାହା ଯିମାରେ ବା ତାକୁ ଦେବ ? ଜାତି ସମାଜର ଭୟ ନ ଥିଲେ ସେ ଅକ ନିଜେ କଣ ରକ୍ଷାକର୍ତ୍ତା ହୋଇ ପାରନ୍ତା ନାଇଁ—ମାତ୍ର ଶାସ୍ତ୍ର ଯେ ସବୁ ଭୟ ଦେଖାଉଛି ସେ 'କଣ କରିବ', 'କଣ କରିବ' ଏହି କଥା ପ୍ରତିନିୟତ ଭାବିଲା ।

ଘରେ ଖିଆ ପିଆ ସରିଲା । ସମସ୍ତେ ଶୋଇବାକୁ ଯିବାକୁ ବାହାରିଲେ । ସରୋଜ ମଣିକୁ ପାଖକୁ ଡାକିଲା, ପଚାରିଲା—

"ମଣି ! କଣ କରିବ କହିଲୁ—ବହୁ ସ୍ଥାନ ବୁଲିଲି, ଗୋଟିଏ ସୁଯୋଗ ମୋତେ ମିଳିଲା ନାହିଁ, ଯହିଁରେ ତୋର ଜୀବନ ସୁଖମୟ ହେବ । ସେପରି ପାତ୍ର ମୋ ଦୃଷ୍ଟିରେ ଆଦୌ ପଡ଼ିଲା ନାହିଁ । ଯେ ବା ପଡ଼ିଲେ, ବନୋଦର ସେଥିରେ ଭଲେ ମତ ହେଲା ନାହିଁ । ବାପାଙ୍କର କଥା ରକ୍ଷା ନ କରି ମୁଁ ତ ରହି ପାରୁ ନାହିଁ—କଣ କରିବ ?" ଏପରି କେତେକ କଥା ଯୋଡ଼ିଯାଡ଼ି କହିଦେଲା ।

ମଣି ଅଖିରୁ ଲୁହ ଗଡ଼ିଲା । ସେ କିଛି ମାତ୍ର ଉତ୍ତର ଦେଲା ନାହିଁ, ଦୁଇ ହାତକୁ ଓହ୍ଲାଇ ପଡ଼ି ସରୋଜର ପାଦ ଧରିଛି ଥରେ ଗୋଟିଏ ମୁଣ୍ଡିଆ ମାରିଦେଇ ତା କୋଠରୀକୁ ପଳାଇଲା । ସରୋଜ ଏଥିର ଅର୍ଥ ବୁଝିଲା କି ନାହିଁ, ସେ ଜାଣେ, ମାତ୍ର ନ ବୁଝିଲା ପରି ରହିଲା । ସେ କି ଉପାୟରେ ମଣିକୁ ସେ ଚିଠି କଥା କହିବ ? ଭାବିଲା, ଆଜି, କାଲି ନବାର ଚେଷ୍ଟା କରିବି । ପ୍ରଦୀପର କଣ ଲେଖୁଛନ୍ତି—ତାଙ୍କୁ ତ କହି ଅଛି । ଭାବି ଆଶ୍ୱସ୍ତ ହେଲା, ଶୋଇ ପଡ଼ିଲା ।

ମାତ୍ର ଚିନ୍ତାରେ ଚିଡ଼ିଲା—ମଣି । ତାର ଜୀବନର ପ୍ରତ୍ୟେକ ଚିତ୍ର ଆଜି ତା' ଆଖି ଆଗରେ ଉଦ୍ଭାସି ଉଠିଲା । ସରୋଜ କଣ ଏତେ ନିର୍ମମ—ତାଟି କଣ ଟିକିଏ ମାୟା ନାହିଁ ! ଏହି ନବଜୀବନୀକୁ ନିଜେ ଗ୍ରହଣ କଲେ ଏପରି କଣ ବା ଘଟି ଯାଆନ୍ତା—ହାୟ, ନିଜେ ଏହା କପରି କହିବ ? ନିଜର ସ୍ୱାର୍ଥ ପାଇଁ ନିଜେ କିପରି ପ୍ରସ୍ତାବନା ଆଣିବ ? ବଧାତାର ଅନ୍ୟ କିଛି ହେବେ ସୃଷ୍ଟିର ରହସ୍ୟ ଅଛି । ଥିଲେ ବା ମୁଁ ତ ଗ୍ରହଣ କରିବ ନାହିଁ । ଯେଉଁ ପାଦପଦ୍ମତଳେ ମନପୁଷ୍ପଟିକୁ ଅର୍ପଣ କରିଚ, ତାହା

ତ କେବେ ସେପରି ଅଶିବ ନାହିଁ । ଦାସୀ ହୋଇ ରହିବ—ତଥାପି ତାର ପରିବର୍ତ୍ତନ ମୋ ପାଖରେ ଅସମ୍ଭବ । ହିନ୍ଦୁନାରୀର ତାହା କାରବାରେ ନାହିଁ । ହିନ୍ଦୁନାରୀ ତାହା କିପରି କରିବ ? ୧୧ବର୍ଷ ଦିନରୁ ଯେ ସ୍ନେହରେ ଚୋଳକୁ ଟାଣିନେଇ ଚୁମ୍ବନ ଦେଇଚ,ସେଇ ତ ସ୍ମୃତି,ସେଇ ତ ସତ୍ୟ— ଆଜ କଣ ? ନା, ହେବ ନାହିଁ ପ୍ରଭୁ ! ଅଜ କେତେଦିନ ଚନ୍ତାନଳରେ ଦଗ୍ଧ କରିବ—ଆଉ କେତେ ଦିନ ପୋଡ଼ି ମାରିବ ?

କେତେ କଣ ତା' ମନରେ ଅଇଲା—ଲେଖିଥିଲେ ' ବିଷାଦିତା' ବୋଲି ଗଦ୍ୟ ବିରାଟ କାବ୍ୟ ହୋଇଥାନ୍ତା । ମାତ୍ର ବନ୍ଧୁଦିନଙ୍କୁ ସେ ଲେଖନୀ ଛାଡ଼ିଥିଲା । ଲେଖିବାକୁ ତାର ଇଚ୍ଛା ଆଦୌ ହେଉ ନଥିଲା । କଣ କରିବ—କରିବ କଣ ? ପ୍ରଭୁ ଜଗନ୍ନାଥ—ଦୂରେ ଦୂରେ କେତେ ରଖିବଥି, ତାର ତ ହେଲା ମନ୍ଦ—ସେ ଆଉ କବିତା ଲେଖିବ କିପରି ?



( ୭ )

ଆଖି ମୁଜ ଖେଳରେ ପଡ଼ି ସରୋଜ କାଲି ରାତିରେ ଦେଖି ଅସିଥିବା ସିନେମା କୋମ୍ପାନିର ବାୟସ୍କୋପ— Love reward ( ପ୍ରେମ ପ୍ରତିଦାନ ) କଥା ଭାବୁଥିଲା । ଭୁଷ୍କର ଲେଲହାନ କହ୍ନ୍ୟା ପାଖରୁ ବାପପୁଅ ଦୁହିଁ ବାଳକାକୁ ଛଡାଇ ଅଣିଲେ, ତା ପରେ ସେ ଅଳ୍ପ ଦିନରେ ବଡ଼-ଲୋକର ଝିଅ ହୋଇଗଲା । ହାଃ, ଯେ କି ସୁନ୍ଦର ! ଯୁବକ ସହିତ କୁମାରୀର ଅବାଧ ମିଳନ କି ପବିତ୍ର ଭାବରେ ଘଟୁଥିବା ! ଏହା ଭିତରେ ସେମାନେ ପରସ୍ପର ପ୍ରତି ଏତେ ଭଲ ପାଇଲେ ଯେ, ଜଣେ ଜଣକୁ ନ ଦେଖିଲେ ସମ୍ଭାଳି ପାରିଲା ନାହିଁ । ପିତାଙ୍କ ହାତୁଡ଼େ ଦିନେ ଦୁହେଁ ଧରାଗଲେ । ପିତା ଜଣେ ଜଜ—ସେ ବାଳକାକୁ ଘରୁ ବାହାର କରିଦେଲେ,

ସେ ବୁଲିଗଲା—ତା ପଛରେ ମଧ୍ୟ ଏ ଯୁବକ ଘରର ସମସ୍ତ ମାୟା ତ୍ୟାଗ କରି ବୁଲିଗଲା । ଶେଷରେ ବାଳକା ପାଇଁ ବାଳକ ଫାଶି କାଠରେ ଝୁଲିଲା—ମାତ୍ର ବାଳକା ତାକୁ ରକ୍ଷା କଲା । ଯୁବକର କି ବାତୁଳତା ! ସେ ତାର ପ୍ରାଣ ପର୍ଯ୍ୟନ୍ତ ତାର ପ୍ରେମିକା ନିକଟରେ ବଳି ଦେବାପାଇଁ ଭୟ କଲା ନାହିଁ । ତାର ମନରେ ଆଇଲା, ସେ କଣ ଏହି ଲୋକାଗ୍ରହ, ସମାଜ ଭୟକୁ ସେପରି ପାଦରେ ଦଳି ପାରିବ ? ସେ କଣ ଜଣକ ପାଇଁ ପ୍ରାଣବଳି ଦେବାକୁ କୁଣ୍ଠିତ ହେବ ନାହିଁ ? ଭାବିଲା, ଆଉ କଣ ଚେଷ୍ଟା— ସେ ନିଜେ ଚେଷ୍ଟାର ପରିପୂର୍ଣ୍ଣ ସାମଗ୍ରୀ । ସବୁ୍ଜକ ବୁଝିଥିଲା, ମାତ୍ର ନ ବୁଝିଲାପରି ରହିଲା ।

ଉଠିବା ମାତ୍ରେ ଦେଖିଲା, ଘର ଆଲୁଅ ଭିତର ସେହି ଦିବ୍ୟ ପ୍ରତିମୂର୍ତ୍ତି ଝଲ ଝଲ ହେଉଛି । ଆଚ୍ଛା, ଏହାକୁ ଅପରକୁ ଦେବାରେ ଲାଭ କଣ ? ତେବେ ତାର ସ୍ତ୍ରୀତ୍ୱ— !

କିନ୍ତୁ ସମସ୍ତପରେ ଡାକବାଲା ଖଣ୍ଡେ ଚିଠି ଦେଇଗଲା । ଉପରେ ଦେଖିଲା ତାହା ବଡନାଦଠାରୁ ଆସିଛି—ମୁହଁ ଧୋଇ ଖୋଲି ତାକୁ ଦେଖିଲା, ସେ ଚିଠି କଣ – ଗୋଟିଏ ପ୍ରବନ୍ଧ ! ବିନୋଦ ଏକବାରେ ଲେଖି ଯାଇଚି କେତେ କଣ !

ପ୍ରିୟତମ ଭାଇ !

ତୋର ପତ୍ର ପଢ଼ି ମୁଁ ବ୍ୟସ୍ତ ହୋଇଛି । ମୁଁ ତୋତେ ବାରମ୍ବାର କହୁଚି ଯେ, ମୁଁ ପରୀକ୍ଷାକର ଦେଖିଛି, ମୁଁ ହାତଲେଖା କବିତା ପଢ଼ି ଜାଣିଛି—ମୁଁ ସୁମଧୁର ସଙ୍ଗୀତ ମଧ୍ୟରେ ଶୁଣିଛି—ସେହି ରୁଣ୍ଡରେ-ସେହି ହୃଦୟରେ ସେହି ମାଧୁରୀ ମଧ୍ୟରେ ତୋର ପ୍ରତିବନ୍ଧ ! ତୋର ରୂପ ! ସେଠାରେ ଅନ୍ୟର ଅଦୌ ନାମ ଗନ୍ଧ ନାହିଁ । ତାର ଅସ୍ୱୀକାର ହେବ, ଏ

କଲ୍ପନା ରୁ କପରି କଲ୍ପ ମୁଁ ଜାଣେ ନାହିଁ ! ସ୍ୱାସ୍ଥ୍ୟ,ଧନ ନାହିଁ,ଗନ୍ଧ ନାହିଁ, ସନ୍ଧ୍ୟା ନାହିଁ,ସକାଳ ନାହିଁ,ସର୍ବଦା ଯେ ତୋର ରୂପ,ତୋର ଗୁଣ,ତୋର ପ୍ରାପ୍ତି ହୃଦୟରେ ପୂର୍ଣ୍ଣରୂପେ ସ୍ଥାନ ଦେଇଛି, ତୁ ମୀତ—ଏ ପ୍ରସ୍ତାବ କରି ପାରିବୁ ନାହିଁ ?

ମୋତେ ଲେଖିଛୁ ଯେ "ତୁ ମତେ କଣ ଏପରି କଲେ ସର୍ବପରି ଗ୍ରହଣ କରିବୁ ?" କପରି ଲେଖିଲୁ ବୁଝି ପାରିଲି ନାହିଁ । ଥରେ କହିଛି, ତୁ ଯଦି ନର୍କର ସୁଗଭୀର ପ୍ରଦେଶକୁ ଭଲ ପାଇ ଯାଉ ତେବେ ମୋତେ ନ ଡାକୁଣୁ ମୁଁ ନିଶ୍ଚୟ ଯିବି । ଏଥିରେ ତୋର ଭୟ କଣ ମୁଁ ବୁଝି ପାରୁ ନାହିଁ । ତୋ ଛଡ଼ା ଆଉ ମଣିଷ ଉପଯୁକ୍ତ କିଏ ? ଯଦି ମୋ ପରି ଗରିବ ଘରେ ବନ୍ଧୁ କରୁ, ତେବେ ମୁଁ ତୋର ସମଧି ହେବି । ତୋ ଦଳରେ କେତେ ଯୁବକ ନାମ ଲେଖାଇବେ । ଏ ଜାତି-ଧର୍ମାକାର ବନ୍ଧନ ମନୁଷ୍ୟର ସ୍ୱାର୍ଥକୃତ । ଯେଉଁମାନେ ଶାସ୍ତ୍ର ଶାସ୍ତ୍ର ହେଉଛନ୍ତି—ଯେଉଁ ସ୍ମୃତି ପ୍ରବୃତ୍ତିକୁ ଅଦର୍ଶ ଦେଖାଇ ଏ ନାପସୁଧାଦଳ ଖଡ୍ଗ ଦେନି ଆଜି ବାହାରୁଛନ୍ତି ତାଙ୍କର ଜାତି କେଉଁଠି ? ଆଜି ବିଶ୍ୱ ବ୍ରହ୍ମାଣ୍ଡରେ ମାନବ ଜାତି । ମାନବ ଧର୍ମ ପ୍ରଚଳିତ ହେବ । ସେ ସ୍ୱାର୍ଥ ତ୍ୟାଗ କରେ । ଭାରତର ଅଧିବାସୀମାନେ ହିନ୍ଦୁ । ସ୍ମୃତିକର୍ତ୍ତାମାନଙ୍କର କଣ ଜାତି ଥିଲା ତୁ ତ ଜାଣୁ ? ବଶିଷ୍ଠ ପରା ଦାସୀ ପୁତ୍ର—ପରାଶର ପରା ଚଣ୍ଡାଳୀର ପୁତ୍ର-ନାରଦ ପରା ଶୂଦ୍ରାର ପୁତ୍ର—ବ୍ୟାସ ପରା କେଉଟୁଣୀ ପୁଅ, ଏହା ଯେହି ଯୁକ୍ତିତର୍କାସ୍ପଦବକ୍ଷ ମନୀଷୀମାନେ ଜାଣିଛନ୍ତି କିପରି ? କହିଲେ କହନ୍ତି—ସେମାନେ ନହିଲେ ତୁମେ । ଆରେ ଏ କଣ ହେଲା ତାର ଉତ୍ତର । ଏ ମୂର୍ଖମାନଙ୍କ କଥାରେ କୌଣସି ମୂଲ୍ୟ ନାହିଁ ।

ତୋର ବିବାହ ଅଶାସ୍ତ୍ରୀୟ ଆଦୌ ନୁହେ । ସେଥିପାଇଁ ଏହି କ୍ଷୁଦ୍ର ଜାତିଭୟ ତୋତେ ଛାଡ଼ିବାକୁ ହେବ । ମୁଁ ଲଢ଼ାଇ କରିବି । ଲଢ଼ାଇ

କଲେ ଜାତି ରହିବ । ବଶିଷ୍ଠ—"ଅକ୍ଷମାଳା"କୁ ବିବାହ କରିଥିଲେ, ସେ କି ଜାତିର କନ୍ୟା ? ଶାନ୍ତ ବର୍ଣ୍ଣ ଅନାର୍ଯ୍ୟ ନୁହେଁ କି ? ଜମଦଗ୍ନି ରେଣୁକାକୁ ବିବାହ କରିଥିଲେ, ସେ କଣ କ୍ଷତ୍ରିୟ ନୁହେଁ ? ଗୌତମଙ୍କ ସ୍ତ୍ରୀ ଅହଲ୍ୟା କଣ ?—କ୍ଷତ୍ରିୟ ନୁହେଁ ? ପୁରାଣରେ ଏପରି ଲକ୍ଷ ଲକ୍ଷ ଅସବର୍ଣ୍ଣ ବିବାହ ସେହି ବୈଦିକ ଯୁଗରୁ ଚଳି ଆସୁଅଛି । ସେଥିରେ କୌଣସି ପ୍ରକାର ଦୋଷ ନାହିଁ ।

ଆଦି କାଳରୁ ଦେଶରେ ପ୍ରତିଲୋମ ଆଉ ଅନୁଲୋମ ବିବାହ ପ୍ରଚଳିତ ଅଛି । ତେବେ ଉଚ୍ଚ ଜାତିର ପୁରୁଷ ନିମ୍ନଜାତୀୟା ସ୍ତ୍ରୀକୁ ବିବାହ କରିବାକୁ ଅନୁଲୋମ ବିବାହ କହନ୍ତି, ଏହା ଦେଶରେ ସର୍ବତ୍ର ଚଳି ଆସି ଅଛି; ମାତ୍ର ପ୍ରତିଲୋମ ବିବାହ ଅଳ୍ପ ଏବଂ ଦୂଷଣୀୟ ହେଲେହେଁ ଶ୍ରୀମଦ୍ ଭାଗବତର ୧୦।୭।୮।୧୩।୧୪ ଶ୍ଳୋକରେ ପ୍ରତିଲୋମଜ ରୋମ-ହର୍ଷଣ ବ୍ରାହ୍ମଣମାନଙ୍କ ମଧ୍ୟରେ ଉଚ୍ଚାସନ ଲାଭ କରିଅଛନ୍ତି । ଆଉ ପଚାରୁଛୁ କଣ ?

ଅସବର୍ଣ୍ଣ ବିବାହ ପୂର୍ବ ଯୁଗରେ ଅବାଧରେ ପ୍ରଚଳିତ ଥିଲା । ଯଦି ଶାସ୍ତ୍ରୀୟ ପ୍ରମାଣ ଦେଖିବାକୁ ଚାହଁ, ତେବେ ଦେଖ—

ତିସ୍ରସ୍ତୁ ଭାର୍ଯ୍ୟା ବିପ୍ରସ୍ୟ ଦ୍ୱେଭାର୍ଯ୍ୟା କ୍ଷତ୍ରିୟସ୍ୟତୁ ।
ଏକୈକ ଭାର୍ଯ୍ୟା ବୈଶ୍ୟସ୍ୟ ତଥା ଶୂଦ୍ରସ୍ୟ କୀର୍ତ୍ତିତା
ବ୍ରାହ୍ମଣୀ କ୍ଷତ୍ରିୟା ବୈଶ୍ୟା ବ୍ରାହ୍ମଣସ୍ୟ ପ୍ରକୀର୍ତ୍ତିତାଃ
କ୍ଷତ୍ରିୟା ଚୈବ ବୈଶ୍ୟାଚ କ୍ଷତ୍ରିୟସ୍ୟ ବିଧୀୟତେ
ବୈଶୈ୍ୟବ ଭାର୍ଯ୍ୟା ବୈଶ୍ୟସ୍ୟ ଶୂଦ୍ରା ଶୂଦ୍ରସ୍ୟ କୀର୍ତ୍ତିତା ।

ଏ ବାହାଘର ମନଗଢ଼ା ଶ୍ଳୋକ ନୁହେଁ । ବ୍ରାହ୍ମଣର ତିନଜାତିର କନ୍ୟା ଭାର୍ଯ୍ୟା, କ୍ଷତ୍ରିୟର ଦୁଇଜାତି ଏବଂ ବୈଶ୍ୟ ଓ ଶୂଦ୍ରର ଏକ୍କ ଏକ୍କ

ଜାତ ହେବ । ବ୍ରାହ୍ମଣ, କ୍ଷତ୍ରିୟ, ଶୂଦ୍ର କନ୍ୟା ବ୍ରାହ୍ମଣ--କ୍ଷତ୍ରିୟ, ବୈଶ୍ୟ,କନ୍ୟା କ୍ଷତ୍ରିୟ ବିବାହ କରିବ । ମହର୍ଷି ବ୍ୟାସ ବ୍ୟାସ ସଂହିତାର ଦ୍ୱିତୀୟ ଅଧ୍ୟାୟରେ ମଧ୍ୟ ଏହି କଥା ସମର୍ଥନ କରିଛନ୍ତି ଯେ—

"ଉଦ୍ଵେ ବିହେତୁ କ୍ଷତ୍ରିୟାଂ ବିପ୍ରୋ ବୈଶ୍ୟାଞ୍ଚ
କ୍ଷତ୍ରିୟୋ ବିଶାଂ ।"

"ବ୍ରାହ୍ମଣ-କ୍ଷତ୍ରିୟ ଓ ବୈଶ୍ୟ, କ୍ଷତ୍ରିୟ-ବୈଶ୍ୟ କନ୍ୟା ଅଭ ବୈଶ୍ୟ-ଶୂଦ୍ର କନ୍ୟା ବିବାହ କରିପାରେ ।"

ଶାସ୍ତ୍ରୀୟ ବ୍ୟକ୍ତିଙ୍କର ମୁଖମଣ୍ଡନ କଥାରେ କାହାର ପ୍ରୟୋଜନ ଅଛି ? ଆମେ ତ ପ୍ରଥମେ ଶାସ୍ତ୍ର ମାନିବୁ ନାହିଁ—କାରଣ ମନୁଙ୍କ ଅଇନ ମନୁଙ୍କ ଯୁଗ ପାଇଁ ଥିଲି, ଅଜ ଯୁଗର ମନୁ ଆମ୍ଭେମାନେ—ଅଇନ କରିବୁ । ଯେତକି ପଦାର୍ଥ ମନୁ ତାଙ୍କ ଯୁଗରେ ଦେଖିଥିଲେ, ଯେତୋଟି ଅସ୍ତୁର ବସ୍ତୁର ମନୁ ଅନୁଭବ କରିଥିଲେ, ସେତୋଟି ଲେଖିଛନ୍ତି । ଅଛି ସିଗାରେଟ ଖାଇଲେ ବିଡ଼ି ଖାଇଲେ କି ପ୍ରାୟଶ୍ଚିତ୍ତ କରିବାକୁ ହେବ ତାହା ମନୁ କେଉଁଠି ଲେଖିଛନ୍ତି—ତେବେ ଏଠାରେ ଧୂମ୍ରପାନ ବୋଲି ନେଇଯିବେ ଯୁକ୍ତିବାଗୀମାନେ । ମାତ୍ର ମନୁ ଏପରି ଗୋଟିଏ ଚିନ୍ତା କରିଥିଲେ କି, ତାଙ୍କ ବର୍ଣ୍ଣିତ ମ୍ଳେଚ୍ଛ ଦେଶରୁ ଯେଉଁ କାଗଜ ମଧ୍ୟ ଦେଇ ଯନ୍ତ୍ରରେ ଧୂମ୍ରପାନର ଉପକରଣ ଆସିବ, ତାହା ପାଇଁ କଣ କରିବି ?

,ପୂର୍ବର ବିଷୟକୁ ଯପାନ୍ତି କି ଭୀଷଣ ଭାବରେ ଚର୍ଣ୍ଣ କରିଛନ୍ତି । ଦେବଯାନୀ ବ୍ରାହ୍ମଣ କୁମାରୀ—ପୁଣି ଗୁରୁପୁତ୍ରୀ—ତାକୁ ବିବାହ ହେବା କି ପ୍ରକାର ଅନ୍ୟାୟ କାର୍ଯ୍ୟ ! ମାତ୍ର ତାହା ପ୍ରାଚୀନ ଋଷି ମହର୍ଷି ତ

ଅସମର୍ଥ ନ କର ନାହାନ୍ତି । ସେମାନେ ବର୍ତ୍ତମାନ ସମାଜ ନେତାଙ୍କ ଭଲ ମର୍ଯ୍ୟାଦା ସ୍ଥାନ ନ ଥିଲେ ।

ବିଷ୍ଣୁସଂହିତାରେ ଲେଖା ଅଛି—

ଅଥ ବ୍ରାହ୍ମଣସ୍ୟ ବର୍ଣ୍ଣାନୁକ୍ରମେଣ

ଚତସ୍ରୋ ଭାର୍ଯ୍ୟା ଭବନ୍ତି । ତିସ୍ରଃ କ୍ଷତ୍ରିୟସ୍ୟ ।
ଦ୍ୱେ ବୈଶ୍ୟସ୍ୟ । ଏକା ଶୂଦ୍ରସ୍ୟ ।—୨୪ଅଧ୍ୟାୟ

ପୁଣି ମନୁ ସଂହିତାର ୩ୟ ଅଧ୍ୟାୟ ୧୩ଶ ଶ୍ଳୋକରେ ଲେଖା ଅଛି—

ଶୂଦ୍ରୈବ ଭାର୍ଯ୍ୟା ଶୂଦ୍ରସ୍ୟ ସାଚ ସ୍ୱାଚ ବିଶଃସ୍ମୃତେ
ତେଚ ସ୍ୱା ଚୈବ ରାଜ୍ଞଃସ୍ୟ ସ୍ତାଶ୍ଚ ସ୍ୱାଗ୍ରଜନ୍ମନଃ ।

"ଶୂଦ୍ରା କେବଳ ଶୂଦ୍ରର ଭାର୍ଯ୍ୟା ହେବ; ଶୂଦ୍ରା ଏବଂ ବୈଶ୍ୟା —ବୈଶ୍ୟର ବିବାହଯୋଗ୍ୟା । ଶୂଦ୍ରା, ବୈଶ୍ୟା, କ୍ଷତ୍ରିୟା କ୍ଷତ୍ରିୟ ବର୍ଣ୍ଣର ବିବାହଯୋଗ୍ୟା ଏବଂ ଶୂଦ୍ରା, ବୈଶ୍ୟା, କ୍ଷତ୍ରିୟା ଏବଂ ବ୍ରାହ୍ମଣ ବ୍ରାହ୍ମଣର ବିବାହଯୋଗ୍ୟା ହେବ ।"

Mr. Elphinstone ( ଏଲ୍‌ଫିନ୍‌ଷ୍ଟୋନ୍ ) ସାହେବ ତାଙ୍କ ରଚିତ ଭାରତବର୍ଷର ଇତିହାସରେ ଲେଖିଛନ୍ତି—

"Men of the three first classes are freely indulged in the choice of women from any inferior caste, but not marriage is permitted with woman of a higher class—."

ଏହିପରି ଲକ୍ଷ ଲକ୍ଷ ପ୍ରମାଣ ଆର୍ଯ୍ୟ ଶାସ୍ତ୍ରରେ ପୂର୍ଣ୍ଣ ହୋଇ ରହିଅଛି ।

ଶୂଦ୍ରାଦି ନିକୃଷ୍ଟ ବର୍ଣ୍ଣୀୟ ବଂଶ ସବୁ ବ୍ରାହ୍ମଣାଦି ଉଚ୍ଚବଂଶ ସହିତ ବୈବାହିକ ସୂତ୍ରରେ ବଦ୍ଧ ହେଲେ ସେ ଉଚ୍ଚବଂଶକୁ ପ୍ରାପ୍ତ ହୁଅନ୍ତି ଏହା ମନୁ ତାଙ୍କର ତୃତୀୟ ଅଧ୍ୟାୟ ୪୪ ଶ୍ଳୋକରେ ଲେଖି ଯାଇ ଅଛନ୍ତି—

ଶରଃ କ୍ଷତ୍ରିୟୟା ଗ୍ରାହ୍ୟଃ ପ୍ରତୋ ଦୋ ବୈଶ୍ୟ କନ୍ୟୟା
ବସନସ୍ୟ ଦଶା ଗ୍ରାହ୍ୟା ଶୂଦ୍ରୟୋତ୍କୃଷ୍ଟ ବେଦନେ ।"

ଆଜି ନମ୍ର ବ୍ରାହ୍ମଣ ଜାତି ନିଜମଧ୍ୟରେ ଶତ ଶତ ପ୍ରଭେଦ ସୃଷ୍ଟି କରି ଅନ୍ୟାନ୍ୟ ଜାତିକୁ ହୀନ କରି ରଖି ଅଛି । ସେଥିପାଇଁ ଉଠିବାକୁ ହେବ – ଘାର ବିକ୍ରମରେ ଲାଗିବାକୁ ହେବ । ତୁ ଘାରକେଶରୀ ହେଉ ସତେଜ ! ତୋ'ର ଯୋଗେ ଜାତି ନବ ଜୀବନ ପାଇବ । ନାନାସ୍ଥାନରେ ନାନା ଉପାୟରେ ଏହା ଅନେକେ ଚଳାଇ ଲେଣି । ଛିଦ୍ର କଣ୍ଟୁ ଭର୍ତ୍ସନା ପ୍ରତି ଭୟ କର ନାଁ । ପ୍ରକୃତରେ ତୋର ସ୍ଥାନ ବର୍ତ୍ତମାନ କଠିନ—ତୁ ସ୍ୱୟଂ ପରିବର୍ତ୍ତନ ଆଣିବୁ । ତୁ ଏପରି ଧାପ୍ପ ସାହାଯରେ ଉଠିବାକୁ ଇଚ୍ଛା କରୁଅଛୁ—ମୁଁ ତୋର ତରସାଥୀ—ଏଥିରେ ସାଙ୍ଗ ହେବ ନାହିଁ ? ମୁଁ ତ ଗାଇ ବୁଲିବି ମନୁଙ୍କର—

ସେହି ନବମ ଅଧ୍ୟାୟ ବର୍ଣ୍ଣିତ ୨୩।୨୪ ଶ୍ଳୋକ ଦୁଇଟିକୁ—ଚତୁର୍ଦ୍ଦିଗରେ-ଗଗନ ପବନ ମୁଖରିତ କରି—

ଅକ୍ଷମାଳା ବଶିଷ୍ଠେନ ସଂଯୁକ୍ତାଧମ ଯୋନିଜା
ଶାରଙ୍ଗୀ ମନ୍ଦପାଳେନ ଜଗାମାର୍ହ୍ୟ ହର୍ଣୀୟତାଂ
ଏତା ଶ୍ଚାନ୍ୟାଶ୍ଚ ଲୋକେଽସ୍ମିନ୍ନପକୃଷ୍ଟ ପ୍ରସୂତୟଃ
ଉତ୍କର୍ଷଂ ଯୋଷିତଃ ପ୍ରାପ୍ତାଃ ସ୍ୱୈଃ
ସ୍ୱୈର୍ଭର୍ତ୍ତୃଗୁଣୈଃ ଶୁଭୈଃ ।

ନିକୃଷ୍ଟକୁଳସମ୍ଭୂତା ଅକ୍ଷମାଳା ଏବଂ ପକ୍ଷିଣୀ—ଶାରଙ୍ଗୀ କ୍ରମାନ୍ୱୟରେ ବଶିଷ୍ଠ ଓ ମନ୍ଦପାଳଙ୍କ ସହିତ ବିବାହସୂତ୍ରରେ ମିଳିତ ହୋଇ ପରମ ମାନ୍ୟା ହୋଇଥିଲେ । ଉକ୍ତ ରମଣୀ ଦୁହେଁ ଏବଂ ସତ୍ୟ . ଙ୍ଗ ପ୍ରଭୃତି ଅନ୍ୟନ୍ୟ କେତେଗୁଡ଼ିଏ ରମଣୀ ଅପକୃଷ୍ଟ ବଂଶୀୟା ବା ଅପକୃଷ୍ଟଯୋନିଜା ହେଲେ ମଧ୍ୟ ଭର୍ତ୍ତୃଗୁଣରେ ସବିଶେଷ ଉତ୍କର୍ଷ ଲାଭ କରିଥିଲେ ।

“ସ୍ତ୍ରୀରତ୍ନଂ ଦୁଷ୍କୁଳାଦପି”—ମନୁ ଲେଖିଛନ୍ତି,ଦୁଷ୍କୁଳରୁ ସୁଦ୍ଧା ଗ୍ରହଣ କରି ପାରିବ ।

ଆଉ ଲେଖି ପାରିବି ନାହିଁ । ତେବେ ଲେଖିଛି । ସମାଜର ଲୋକେ କଣ କହିବେ, ଏଥିରୁ ଭୟ କାପୁରୁଷ ଛଡ଼ା ଅନ୍ୟ କାହାଠାରେ ଦେଖା ଯାଏ ନାହିଁ । ମୋତେ ଆମ ଗାଁରେ କଣ କରୁ ନ ଥିଲେ । ମୁଁ ମୋର ସ୍ତ୍ରୀ ଠାରୁ ନାକ କାନରୁ ଗହଣା ଫିଙ୍ଗି ଦେଇଥିଲି—ତାର ବ୍ରହ୍ମରାକ୍ଷସୀ ରୂପ ବଦଳାଇ ଦେଇଥିଲି—

ମାତ୍ର ମୋର ଏ ଦୋଷ କେତେ ଦିନ ରହିଲା ? ଆଜି ମୋର ଶିକ୍ଷା ଏ ରାଜ୍ୟରେ ଉପକାର କରିଛି । ବହୁତ ବାଳିକା ନିଜେ ନିଜେ ବୁଝି ପାରି ତାହା ଫିଙ୍ଗି ଦେଇଅଛନ୍ତି, ବହୁତ ପୁରୁଷ ସ୍ୱ ସ୍ୱ ସ୍ତ୍ରୀମାନଙ୍କଠାରୁ ବାହାର କରି ଦେଇଅଛନ୍ତି । ହାୟ ହାୟ ! ନାକଟାକୁ ଗୁଡ଼ାଏ ବିଭତ୍ସତାରେ ମଣ୍ଡନ କଲେ ସେ କି କଷ୍ଟ ପାଇବ ନାହିଁ ? ପୁଣି ବ୍ରହ୍ମରାକ୍ଷସୀ ଦେଖିଲେ କିଏ ନ ଚମକିବ ?

ସବୁ ଚଲାକ ସରୋଜ ମୁଁ ଜାଣେ ।

ସେ ସବୁ କବିତା ଲେଖିଥିଲି—‘କବିତା ରାଇଜେ ସେହି ପ୍ରଥମ ଚୁମ୍ବନ’---ସବୁ ମନେ ଅଛି । ଉଭୟଙ୍କର ଉଭୟଙ୍କଠାରେ ପ୍ରୀତି ଅଛି, ଏ

ମିଳନ ଅଛି ମଙ୍ଗଳଜନକ । ଏଥିରେ ପଛେଇବାର କୌଣସି କଥା ନାହିଁ । ବୃଥାରେ ହୃଦୟକୁ ବିଚଳିତ କରି ପାଗଳ ହେବାର ପ୍ରୟୋଜନ ନାହିଁ । ଧୀରସ୍ଥିର ଭାବରେ କାର୍ଯ୍ୟ କଲେ—ସାହସ ଧୈର୍ଯ୍ୟ ଧରି କର୍ମରେ ପ୍ରବେଶ କଲେ ସଫଳତା ଅତେ ଅତେ ମିଳିବ—ମଣିକାଞ୍ଚନର ସଂଯୋଗ ହେବ ।

ଏ ବିବାହରେ ପୁରୋହିତ—ବିନୋଦ । ସେଥିପାଇଁ ଭାବିଲେ ଭୟ ନାହିଁ ମୋର । ଏହା ଲୁଚିଲ ଛପାଇ ହେବ ନାହିଁ—ସମସ୍ତେ ଜାଣିବେ, ସମାଲୋଚନା କରିବେ, ଅବଶ୍ୟ ସେଥିପାଇଁ ଚିନ୍ତା ନାହିଁ । ବୀର ଯୁବକ, ଧୈର୍ଯ୍ୟ ଧରି ଉଠ । ପଛକୁ ଚାହଁ—ତୁମ୍ଭର ସ୍ନେହମୟ ସଖା ବିନୋଦ ସୁରହତିଆର ହାତ ତୁଳା ହୋଇଛି । ଶୁଭଦିନ ନିକଟରେ । ମୁଁ ଶୀଘ୍ର ଯିବି—ଆଜି ଏତିକି ।

ଚିରସ୍ନେହର
ଶ୍ରୀମାନ୍ ବିନୋଦ—

ଦୀର୍ଘ ଦଶପୃଷ୍ଠାବ୍ୟାପୀ ପତ୍ରଖଣ୍ଡି ସରିଲା ପଢ଼ିସାରି ଗୋଟିଏ ଦୀର୍ଘନିଶ୍ୱାସ ପକାଇଲା । ଦେଖିଲା—ମଣି ତାକୁ ଚାହିଁ ବସି ଶେଯ ଯାଇଛି । ହଠାତ୍ ଉଠିଯାଇ ତାକୁ ଦୁଇ ବାହୁରେ ଆବଦ୍ଧ କରି କହିଲା—"ମଣି ! ମଣି ! ଏତେଦିନେ ନବଶକ୍ତିରେ ତୋ ନିକଟରେ ଗୋଟିଏ ପ୍ରସ୍ତାବ କରିବାକୁ ମୁଁ ସାହସୀ ହୋଇଛି । ପିତାଙ୍କର ଶୁଭ ଇଚ୍ଛା ପୂରଣ ପାଇଁ ମୁଁ ତୋ ପାଇଁ ତୋ ସମକକ୍ଷ ଯୁବକଟିଏ ଖୋଜିଛି । ସେ କଣ ତୋ ମନକୁ ପାଇବ ? ଆଉ, ତୁ କଣ ମୋତେ ବିବାହ ଭୁଲି ପାରିବୁ ?

ଦୁଃଖୀ କୋଟି ନିଧି ପାଇଲେ ଯେପରି ହୁଏ, ପଥହରା ତାର ପ୍ରକୃତ ପଥ ପାଇଲେ ଯେପରି ଆନନ୍ଦରେ ମୁଗ୍ଧ ହୋଇଯାଏ, ମଣି ଠିକ୍

ସେହିପରି ହେଲା । ତାର ହୃଦୟ ଆନନ୍ଦରେ ଗଦ ଗଦ ହୋଇଗଲା । କିଛି କହି ପାରିଲା ନାହିଁ । ସ୍ନିଗ୍ଧ ଆନନ୍ଦ—ମାଧୁରୀ ତାର ଉଭୟ ମନୋହାରୀ ଆଖି ଯୁଗଳର କୋଣରୁ ଝରି ପଡ଼ିଲା । ସେ ଦୁଇ ବାହୁ ଲତାରେ ତାର ପ୍ରିୟତମକୁ ଟାଣି ଧରି ତାର ହୃଦୟରେ ମୁହଁଟିକୁ ଲୁଚାଇ ଦେଲା । ଦିନ ଦିନ ରାତି ରାତି ଚିନ୍ତାରେ—କଳ୍ପନାରେ ଆଶାରେ —କବିତାରେ—କଥାରେ—ଗାନରେ ସେ ଯାହାକୁ ଅନବରତ ଖୋଜୁଛି; ସେ ପ୍ରଶ୍ନ କରୁଛି ଏତେ ଭୀତ ହୋଇ କାହିଁକି ? ସେ ଭାବିଲା ଏ ଅଭାଗୀର କଣ ଏପରି ଭାଗ୍ୟ ଅଛି—କହିବ ବୋଲି ମାତ୍ର କହି ପାରିଲା ନାହିଁ ।

ଏତେ ଅନୁନୟରେ ତଥାପି ସରୋଜ ବାଧ୍ୟ କରିପାରିଲା ନାହିଁ; ସେ ପୁଣି ପଚାରିଲା—"ତୋର ହୃଦୟକଥା ମୋତେ ସ୍ପଷ୍ଟ କହ—ମୁଁ ଶୁଣିବାକୁ ଚାହେଁ—ବାସ୍ତବରେ ତୁ କଣ ମୋତେ ସେପରି ଇଚ୍ଛାରେ ଭଲପାଉ ? ତଦ୍ୱାରା ତୋର ଜୀବନ ସୁଖମୟ ହେବ ?"

ମଣିର ମନ କଣ ହୋଇଗଲା । ସେ ଆଉ କମର ଭଲ ପାଇବ ? ତାର ପ୍ରେମ ଭିତରେ ସେ କଣ ସେହି ଜୀବନ୍ତ ମୂର୍ତ୍ତିର ଛାୟାକୁ ଅନୁଭବ କରି ନାହିଁ ? କହିବାକୁ ଲାଜ ମାଡ଼ିଲେ ସୁଦ୍ଧା ମୁହଁଟିକୁ ଲୁଚାଇ କହିଲା—"ମୋର ସେପରି ଭାଗ୍ୟ ଥିଲେ କିନା ? ଯଦି ପ୍ରାଣଟି ଅର୍ପଣ କରି ଦେଇଛି ତାହାର ପାଦପଦ୍ମରେ, ଯଦି ତାହାପାଇଁ ନିତି ପ୍ରତି ମୁହୂର୍ତ୍ତରେ ଲୋତକ ଢାଳୁଛି—ଯଦି ତାହାର ଏକମାତ୍ର ପ୍ରାଣମନ-ବିମୋହନ ମୂର୍ତ୍ତି ଚିନ୍ତା କରୁଛି, ତେବେ ମୋର ସେହି ଆଦରଧନଟିର—ଯାହାର ହସ୍ତ ସହିତ ପିତା ମୃତ୍ୟୁକାଳର ଠିକ୍ ପୂର୍ବ ମୁହୂର୍ତ୍ତରେ ମୋର ହାତଟିକୁ ମିଶାଇ ଦେଇ ଚାପି ଧରିଥିଲେ—"

ଆଉ କହି ପାରିଲା ନାହିଁ—ଓଠ ବସିଗଲା । ବେକରୁ ଜେଳ ସରୋଜକୁ ଟାଣି ଧରିଲା । ଏତେଦିନେ ସେ ତାର ଚିରପ୍ରୀତିମୟକୁ ହୃଦୟ

ନିକଟରେ ପାଇଛ—ଶୁଣିଛ କିପରି ? ସତ୍ୟେନର ସବୁ ପୂର୍ବ କଥା ଚୋଟିକଠୁ ମନେ ପଡ଼ିଲା, ସେ ମନେ କଲା—"ବିନୋଦର କଥା ଠିକ୍ । ହାୟ ! ଏହି ସୁକୁମାର ଫୁଲଟିକୁ ତପ୍ତ ଜଳରେ ନିକ୍ଷେପ କରିଥିଲେ ତାର ଅବସ୍ଥା କଣ ହୋଇଥାନ୍ତା—ଏବଂ ତା' ସଙ୍ଗେ ମୋର ଦଶା କଣ ହୋଇଥାନ୍ତା ?"

"ମଣି ! ମଣି ! ଯେବେ ମୁଁ ତୋତେ ବିବାହ କରେଁ, ତେବେ ମୁଁ ତ ବ୍ରାହ୍ମଣ ଜାତିରେ ଆଉ ରହିବି ନାହିଁ ? କିପରି ପୁଣି ହେବ ? ମୋତେ ତ ଜାତିବାଲା ଅଚଳ କରିବେ ?"

ମଣି କିଛି ସଙ୍ଗେ ସଙ୍ଗେ କହି ପାରିଲା ନାହିଁ—ଶେଷରେ ବଡ଼ କଷ୍ଟରେ କହିଲା—"ତୁମ୍ଭ ନିକଟରେ ଜାତି ସମାଜର ବନ୍ଧନ କେତେ ଦୂର ଜାଣେ ନାହିଁ—ତଥାପି ତୁମର ଯଦି ସେପରି ଅସୁବିଧା ହୁଏ, ତେବେ ମୋର ବିବାହ ପ୍ରୟୋଜନ ନାହିଁ । ମୁଁ ଚାହେଁ ତୁମର ମଙ୍ଗଳ । ମୋର ସ୍ୱାର୍ଥ ପାଇଁ ତୁମର କ୍ଷତି କରିବା ମୋର ଇଚ୍ଛା ନୁହେଁ । ଆହା ମୋତେ କଣ ତୁମ୍ଭ ବିବାହିତ ସ୍ତ୍ରୀର ଦାସୀଭାବରେ ରଖିବ ନାହିଁ ?"

ସତ୍ୟେନ କାନ୍ଦିପକାଇଲା—ଦୁହେଁ ଦୁହିଁଙ୍କୁ ଧରି ଖୁବ୍ ଅସରାଏ ଲେଖାଏଁ କାନ୍ଦିଲେ । ସତ୍ୟେନ ଧୈର୍ଯ୍ୟ ଧରି କହିଲା—"ମଣି ! ତୁ ମୋର ହୃଦୟର ଦେବତା—ନନ୍ଦନର ପାରିଜାତ—ତୋତେ ମୁଁ ଦାସୀ କରି ରଖିବି—ଆଉ ମୋର ଗୃହର ଅଧୀଶ୍ୱରୀ କିଏ ହେବ ? ଛାର ଜାତି—ସମାଜର ବନ୍ଧନ ପାଇଁ ମୁଁ ତୋତେ ଦାସୀ କରିବି—? ହାୟ, ଆଉ କାନ୍ଦନା ? ତୁ ମୋର—ମୁଁ ତୋର—ମୁଁ ତୋ'ପାଇଁ—ତୁ ମୋ ପାଇଁ—ଆମେ ଦୁହେଁ ପରସ୍ପର ବନ୍ଧା— । ପିତା ଡାକ ଦେଇ ଯାଇଅଛନ୍ତି—ମୁଁ ମୃତ—ତୁମ୍ଭେ ନ ପାରି ବ୍ରହ୍ମାଣ୍ଡ ବୁଲୁଥିଲି । ତୁ ମୋତେ ପ୍ରାଣଠାରୁ ଅଧିକ ଭଲ ପାଉ—ମୁଁ ତୋତେ ପ୍ରାଣଠୁ ଅଧିକ ଭଲପାଏ । ଏହା କେହି ଜାହା

କଥା ଅଦୌ ନ ଜାଣି ଆମେ ଏମିତି ହଉଛୁ । ତୋ କଥା ମୁଁ ଜାଣିପାରେ ନାହିଁ—କିଂବା ମୋ କଥା ତୁ ଜାଣିପାରୁ ନାହୁଁ । ଏହି କଥା ନା କଣ ?"

ମଣି ଏଥର ଅଗ୍ରହରେ କହିଲା—"ହିଁ" ସରେଜ କିଛି ସମୟ ଛିଡ଼ା ହୋଇଦେଇ କହିଲା—"ମଣି ! ଅଚ୍ଛା—ମୁଁ ତ ତୋତେ ମୋର ସ୍ତ୍ରୀ ଭାବରେ ସମ୍ମାନ ଦେଇ କଥା କହିପାରିବି ନାହିଁ କିଂବା ତୋତେ ତ ପ୍ରିୟତମା ବୋଲି ସଂବୋଧନ କରି ପାରିବି ନାହିଁ—ତୁ ତ କହ, ଏତେ ବଡ଼ ଶିକ୍ଷିତା ମହିଳା—ମୋତେ କେବେ କହିବୁ ନାହିଁ ? ଅଚ୍ଛା—ଆରେ ତତେ ତ ବେଶୀ ଅଜଣା ହେବ—ତୁ ମୋତେ କଣ ବୋଲି ଡ଼ାକିବୁ ? କହ କଣ ଆଉ କହିବୁ ?"

ଏଥର ମଣି ମୁହଁରେ ହସ ଦେଖାଗଲା । ସେ ଦରହସା ମୁହଁରେ କହିଲା—"କେଜ ଅପିଲେ ଯାହା ବୋଲି ଡ଼ାକିବ, ଏଇ ଥର ଡ଼ାକି ଦେଉଛ—"ମୋ ପ୍ରିୟତମେ !"

ସରେଜ ହସି ଉଠିଲା—"ଅଚ୍ଛା, ମୁଁ ତେବେ ପ୍ରିୟତମା ବୋଲି ଗୋଟାଏ ଡ଼ାକ ଡ଼ାକି ଦେଉଛି ।" ମାତ୍ର ସେ କହିଲା, ଡ଼ାକିପାରିଲା ନାହିଁ । ସରେଜ ପୁଣି କହିଲା—"ସତେ ମଣି, ମୁଁ କଣ ତତେ—'ତୁ'—'ମଣି' ଏମିତି ଡ଼ାକିବି ?"

ଏଥର ମଣି ମୁଣ୍ଡ ନୁଆଇଁ କହିଲା—"ମୋତେ କିଛି ସେମିତି ଡ଼ାକି ନ ପାରିଲେ ମୋର 'ଗୋବର ଗୋଟେଇ' ନାମ ଧରି ଡ଼ାକୁ ନାହିଁ ?" ଆଜ ତାର ଏହି ମିଳନ ଦିନରେ ସେହି ପିଲାଦିନର ଗଳ୍ପ ସ୍ମୃତି ମନେ ପଡ଼ିଗଲା ।

ସରେଜ ମଣିକୁ କହିଲା—"ନା—ନା— ତୁ ମୋର ଗୋବର ଗୋଟେଇ ନୁହଁ—ତୁ ମୋର ପ୍ରିୟତମା ନୁହଁ—ତୁ ମୋର ହୃଦୟର

ମଣି—'ମଣି'। ଏହା କହି ହୃଦୟକୁ ଟାଣି ନେଲ । ଦୁଇଟିପ୍ରାଣ ଏକାଠି ମିଶିଗଲ । ସେ କି ପରମ ସୁଖ ! ସେ କି ମଧୁର ଅନୁଭୂତି ! ! ! !

ମଣିର ମନେ ପଡ଼ିଲ ତାର ଇସ୍କୁଲ ପାଠ ପଢ଼ା କଥା । ତାକୁ ମିସନ୍ସ୍ ଯେ ସର୍ବଦା ତା ନିକଟରେ ଜଗନ୍ନାଥ ପ୍ରତିମାର କୃଷ୍ଣ ମୂର୍ତ୍ତିର ହୀନତା ବର୍ଣ୍ଣନା କରି ଯୀଶୁଙ୍କର ମହତ୍ତ୍ୱ ଶିଖାଇ ପରାସ୍ତ ହୋଇଥିଲେ ତାହା ମନେ ପଡ଼ିଲ । ସଦେଇକୁ ସେହି କଥା କହି, କହିଲ—"ଭାଇ, ବାସ୍ତବରେ ମୁଁ କପର ଛାଡ଼ିବି—ତୁମେ ତ ମୋର ଭାଇ । ମୁଁ ତାହା ବଦଳାଇ ପାରିବି ନାହିଁ । କାରଣ ମିସ୍‌ରାଯ୍ଙ୍କ ଶତ ଚେଷ୍ଟାରେ ମୋର ଜଗନ୍ନାଥ ଭକ୍ତି ଦୂର ହୋଇ ନାହିଁ, ଆଉ 'ଭାଇ' ଡାକ କପରି ଛାଡ଼ିବି ? ମୁଁ ଯେ ଗୋଟିଏ ପଥଭ୍ରଷ୍ଟା ନାରୀ ।" ସଦେଇ "ଦେଖାନା ପଛକେ", କହି ସେ ମିସ୍‌ରାସ୍ଙ୍କ କଥା ଶୁଣିବାକୁ ବଡ଼ କୌତୂହଳୀ ହେଲ ।

ମଣି କହିଲ—"ଆମର ପ୍ରିନ୍‌ସପାଲ ମିସ୍‌ରାସ୍ ମତେ ବଡ଼ ଭଲ ପାଆନ୍ତି । ଇସ୍କୁଲରେ ସମସ୍ତେ ଯେତେ ଭଲପାଆନ୍ତି, ତାହା ଅପେକ୍ଷା ସେ ବେଶୀ ଭଲ ପାଆନ୍ତି ଗୋଟିଏ କାରଣ ନେଇ । କାରଣ ତାଙ୍କର ଇଚ୍ଛା, ସେ ମୋତେ ଖ୍ରୀଷ୍ଟିଆନ କରିବେ । ସେଥିପାଇଁ ମୋତେ କେତେ ପ୍ରଲୋଭନ ଦେଖାନ୍ତି ଏବଂ ନାନାପ୍ରକାର ଶୃଙ୍ଖଳ ଧମକ ଦିଅନ୍ତି । ଉପାସନା ବେଳେ ଯୀଶୁ ନାମଠାରେ ମୋର କୃଷ୍ଣନାମ କିମ୍ବା ଜଗନ୍ନାଥ ନାମ ହୋଇଯାଏ ।

"ଛାତ୍ରୀମାନଙ୍କୁ ଉପାସନାଶେଷରେ ବୁଝାଇ ଦିଆଯାଏ ଯେ—ଦେଖ, ଈଶ୍ୱରଙ୍କ ପୁତ୍ରଙ୍କ ପାଖରେ ତୁମ୍ଭେମାନେ ଶରଣ ନ ନେଇ ଯଦି ପିତୁଳା ନିକଟରେ ନଅ, ତେବେ ଅନନ୍ତ ନରକ ଭୋଗିବ । ଘରେ ଗଣ୍ଡେ ବେଙ୍ଗା ନେଇ ତୁମ୍ଭ ଠାକୁରଙ୍କୁ ଏତେ ଫୋହାର ଦେବଟି, ସେ ଦେଖିବା କଣରେ କେଉଁ ଉଠିବେ ? ଅଉ ତୁମ୍ଭଙ୍କୁ ଓଲଟି କଣରେ ବୃଷ୍ଟୁଡ଼ା ମାରିବେ ? ତାହା

ଯଦି ନ ହୁଏ ତେବେ ସେ ତୁମ୍ଭଙ୍କୁ ଅନନ୍ତ ନରକରୁ କିପରି ତ୍ରାଣ କରିବେ ?"

"ଏପରି ଯୁକ୍ତି ଶୁଣି ମୋତେ ହସ ମାଡ଼େ । ହିନ୍ଦୁ ତେବେ ପିତୁଳା ପୂଜାକରେ ଏହି ଅର୍ଥରେ ! ଅନ୍ୟାନ୍ୟ ଛାତ୍ରୀମାନେ ଶାଘ୍ର ନ କଲେହେଁ ପ୍ରିନସ୍‌ପାଲଙ୍କର ଆଦର ପାଇବା ପାଇଁ ହଁ କଥାରେ ହଁ କରି ଦିଅନ୍ତି—ମାତ୍ର ମୁଁ ବାସ୍ତବରେ କେବେ ମିଛ କହେ ନାହିଁ । ମିଶ୍‌ନାରୀ ତ ପ୍ରାୟ ସଦାବେଳେ ମେମ୍ ସାଜିଥାନ୍ତି; ତାଙ୍କର ମୁଣ୍ଡବାଳ ଠାରୁ ଆରମ୍ଭ କରି ଗୋଡ଼ଯାଏ ସେ ବଂଶ ଶତାବ୍ଦୀର ସଭ୍ୟତାଲୋକିତ ଉଲଗ୍ନ ପ୍ରକୃତିର ମେମ୍‌ଟିଏ । ତା ନ ହେଲେ ମିଶନ୍ ସ୍କୁଲରେ ପ୍ରିନସ୍‌ପାଲ ହେବେ କିପରି ? ବିଲାତରୁ ଫେରି ତାଙ୍କର କୌଣସି ପ୍ରକାରେ ବିଲାତ ଫେଶନ୍‌ଟା ଦୂର ହୋଇ ନ ଥାଏ ।

"ଦିନେ ମୋତେ ଉପାସନା ଗୀତଗାନ ସମୟରେ ପଚାରିଲେ—"ସନ ! ଅଇ ହୋପ୍ ଇଉ ଲାଇକ୍ ଦି ସାମସ୍ ? (ମୁଁ ଆଶାକରେ—ଧର୍ମସଙ୍ଗୀତ ତୁମ୍ଭଙ୍କୁ ବଡ଼ ଭଲ ଲାଗେ ? )"

ମୁଁ ମିଥ୍ୟା କହି ପାରିଲି ନାହିଁ—ସତ୍ୟ କହି ତାଙ୍କ କଟୁ କଥା-ଘାତରେ ପଡ଼ିଲି ସତ୍ୟ ତେବେ ମୋଠି ଏପରି କଣ ତାଙ୍କର ଶ୍ରଦ୍ଧା ଥିଲା, ସେ ରାଗଟା ଦଣ୍ଡକେ ଭୁଲିଯାଇ ପୁଣି ପ୍ରତିମା ପୂଜାରେ ଅନନ୍ତ ନରକ ଭୋଗ ଶିଖାଇ ବସିଲେ ।

"ମୁଁ କହିଲି—ନୋ ! ଓଃ ହାଉ ଶକ !" ( ନା, ଉଃ କେଡ଼େ ଭୟାନକ ! ) ତାଙ୍କର ଆଖି ଲାଲ ହୋଇଗଲା—ସେ ଗର୍ଜନ କରି ଆଣ୍ଠୁକରି ଉଠିଲେ ଏବଂ ଜଗନ୍ନାଥଙ୍କର ନିନ୍ଦାରେ ସେଠା ଖ୍ରୀଷ୍ଟାନର ଗଗନ ପବନ ଏକାବେଳେ ଅପରିଷ୍କାର କରିଦେଲେ । ଜଗନ୍ନାଥଙ୍କ ନିନ୍ଦା ଶୁଣିଲେ ମୋର ଆଖିରୁ ଲୁହ ଗଡ଼ିଯାଏ—ମୁଁ ସମ୍ଭଲପରେ

ନାହିଁ । ସେଥିପାଇଁ ସେ ମୋତେ ଛଳାଇ କହନ୍ତି—'ଛି- ଛି, ଏତେବଡ ଶିକ୍ଷିତା ଚତୁରୀ ପିଲଟା ପିରୁଳାର ନନ୍ଦା ଶୁଣି ଭାବୁଚ ! ଅଛ, ମଣି ! ତୁ ତ ହିନ୍ଦୁସମାଜର ପିଲପର ଦେଖା ଯାଉ ନାହୁଁ; ତୋର ଚେହେରା ତ ଖ୍ରୀଷ୍ଟିଅନ ସମାଜ ପର ସ୍ପଷ୍ଟ-ଦେଖାଯାଉଚ । ତୁ ଉନ୍ନତ ସମାଜ ନାମରେ ନାମିତ ହେବାକୁ କୁଣ୍ଠିତ କାହିଁକି ?

"ମୁଁ କନ୍ତୁମାବ କହେ ନାହିଁ । ମୋର ସ୍କୁଲ ଛାଡ଼ିବା ଯାଏ ମିସ୍‌ରାୟ ବହୁତ ଚେଷ୍ଟା କରିଚନ୍ତି; ମାବ ମୋର ଜଗନ୍ନାଥ ଭକ୍ତି-ନାମର ପରିବର୍ତ୍ତନ ନ ଦେଖି ଚମକ ପଡ଼ିଚନ୍ତି । ଅଉ ଶେଷରେ ବଦାୟ ନେଲ୍‌-ବେଳେ ମୋତେ କୋଳକୁ ନେଇ କହିଚନ୍ତି—ମଣି ! ତୋର ପଛ୍ୟ-ବାଦିତା, ନିର୍ଭିକତା ଏହି ଦଶବର୍ଷ ପର୍ଯ୍ୟନ୍ତରେ କୌଣସି ବାଳିକାଠାରେ କେବେ ମାବ ଦେଖି ନାହିଁ । ତୁ ମୋର କଣ ଶିଷ୍ୟା ହେବୁ, ତୁ ମୋର ଗୁରୁ । ଦେଖ, ଏଇ ଅଜ ତୋର ସମ୍ମୁଖରେ ପ୍ରତିଜ୍ଞା କରୁଚ ଯେ, ତୁମେ ଯେତେବେଳେ ମୋର ଏତେ ଚେଷ୍ଟାରେ ଭିନ୍ନଧର୍ମକୁ ଅନ୍ତରର ସହିତ ଗ୍ରହଣ କରିପାରିଲ୍ ନାହିଁ, ମୁଁ ସ୍ୱତଃପ୍ରବୃତ୍ତ ହୋଇ ପରର ବେଶଭୂଷା ଅଣେଇର କରିବାକୁ ଲୋଡ଼ା କଣ ? ତୋପରି ମୁଁ ନିର୍ମଳ ହେବ—ଜଗ-ନ୍ନାଥଙ୍କୁ ଭକ୍ତି କରିବ—ତୋ ପରି ଶାଢ଼ୀ ପିନ୍ଧିବ—ମୁଁ ହିନ୍ଦୁନାରୀ ହେବ । ଯଦି ସେପରି ସୁବିଧା ମିଳେ, ମୁଁ ନିଶ୍ଚୟ ଏ ଧର୍ମ ତ୍ୟାଗକରି ସ୍ୱଦେଶ ଧର୍ମ ଗ୍ରହଣ କରିବି ।"

ସରୋଜର ହୃଦୟ ପ୍ରଫୁଲ୍ଲ ହୋଇଗଲା । ସେ କହିଲା—''ମଣି, ନୁଁ ତ ଶୁଣିଛୁ,ମିସ୍‌ରାୟ ତୁମ୍ଭ ସ୍କୁଲର ମାଷ୍ଟର ଲହୋରରେ ହିନ୍ଦୁ ହୋଇ ଯାଇଚନ୍ତି ।"

ସେହିଦିନ ଉଭୟଙ୍କ ହୃଦୟରୁ ପାପତାପ ଦୂର ହୋଇଗଲା । ଏତେମାନ ଦୁଃଖର ବନ୍ଧ ଭାଙ୍ଗିଗଲା—ଦୁଇଟି ପରିଷ୍କାର ବିସ୍ତୃତ ହୃଦୟର ଅଗଣା ମଧ୍ୟରୁ ସୁଦୃଢ଼ ମନ୍ଦିର କାନ୍ଥଟି ଉଠିଗଲା ।

ବିନୋଦର ଚିଠି ଖଣ୍ଡିକ ସରୋଜ କେମାମଣି ହାତକୁ ବଢାଇ ଦେଇ ନିତ୍ୟକର୍ମ ସାରିବା ପାଇଁ ତଳକୁ ଚାଲିଆସିଲା । ମଣି ସ୍ନେହରେ ଲୁଚାଇ ଲୁଚାଇ ତାହା ପାଠକଲା । ଥରେ ପଢ଼ିଲା, ଦୁଇଥର ପଢ଼ିଲା, ମଧ୍ୟ ତାର ତେବେ ତୃପ୍ତି ଆସିଲା ନାହିଁ । ତେବେ ବିନୋଦ ତାର ଏତେ ଉପକାରୀ—ବିନୋଦ ତାର ଏତେ ହିତକାମୀ ! ହାୟ, ବିନୋଦ ଭାଇ, ଆମ ପାଖରେ ନ ରହି ଦୂରରେ ରହିବ କାହିଁକି ? ତାର ନାନା ପ୍ରକାର ଚିନ୍ତା ଆଇଲା—

\+ \+ \+ \+

ସରୋଜ ତଳକୁ ଯାଇ ପିଉସୀଙ୍କର ଗର୍ଜନ ଶୁଣି ଥମିଗଲା ! ଧନ୍ୟ ପାଟି ! ଏ ପାଟି କାହିଁରେ ତିଆର ହୋଇଛି, ଏହାର ଛନ୍ଦମାନଙ୍କ ବିଶ୍ରାମ ନାହିଁ ! ଧନ୍ୟ ଧନ୍ୟ ! ସରୋଜ ବୁଢ଼ୀର ଭାବ ଗତିବିଧି ଦେଖିବା ପାଇଁ କହିଲା, "ନାନୀ ! ମୋର ବିବାହ ଏବେ ୧୫ ଦିନ ପରେ ଶୁକ୍ଳ ଦଶମୀ ଦିନ ହେଉଛି—ଶୁଣିଛ ନା ?"

ବୁଢ଼ୀ ଆନନ୍ଦ ହୋଇ କହି ଉଠିଲା—"ଅଲୋ, ମୋ ଚାନ୍ଦର ବୁଦ୍ଧି ହେଲାଣି ଲୋ ! ହଉ ହଉ ! କଣ ପାଉଁଶୀଙ୍କ ଘରେ କଲୁଣ ? ଦୁଃଖୀ ତ ଭାରି ଭଲ ପିଲା । ଗୋଟିଏ ବୁଡ଼ିଳରେ ଗଢ଼ା । ଅଧୁ ଅଳଙ୍କାର ଦିହମୁଣ୍ଡ ଡାଳରେ ଫୁଲ ଗୁନ୍ଥା ହେଲା ପରି ରହିବ । ହଉ—ହଉ !

ସରୋଜ ମୁରୁକି ହସିଲା । ମାତ୍ର ମୋହନ ଆଉ କିଛି କହିଲା ନାହିଁ । ମଣିକୁ ସଙ୍କେତରେ କହିଦେଲା ଯେ, ସେମାନେ ତାକୁ ଯାହା ତା' କହିଲେ ସେ ସେପରି ସହିଯାଏ । ମଣି କ'ଣ ସରୋଜ କଥାକୁ ଅମାନ୍ୟ ହେବ ?

ବୁଢ଼ୀ ଆଉ ଦିନେ ସରୋଜକୁ ଡାକି ମଣି କଥା ନେଇ କେତେ ମନ୍ଦ କଥା ଅତି ଧୀରରେ କହି ବସିଲା—ଯେପରି ସରୋଜ ତାଙ୍କର

ହଜର ! ମଣିଷା କଣ ଗୋଷ୍ଠୀରେ କୁମ୍ଭୀର ! ସରୋଜ କିଛି ଉତ୍ତର କଲା ନାହିଁ—ମାତ୍ର ଏତିକି କହି ଅଟକିଲା "ଦେଖିବା—!"

ସେତିକି କଥାରେ ମା ଝିଅଙ୍କର ଏପରି ମନ ମୋଡ଼ ହୋଇଗଲା ଯେ, ମଣିକୁ ଗୋଡ଼େ ଗୋଡ଼େ ଲାଗିଲେ—କିଣ ପଦେ କିଛି କହି ଶୁଣାଇ ଦେବା ପାଇଁ । ମାତ୍ର ଚତୁର କୁମାରୀକୁ ସୁବିଧାରେ କେହି ପାଇଲେ ନାହିଁ । ମଣି ସେମାନଙ୍କ କଥା ସବୁକୁ ଉପନ୍ୟାସ ଲେଖିବା ପାଇଁ ନୋଟ୍ କରି ରଖିଲା ଏବଂ ତାଙ୍କ କଥାରେ ସେ ହସି ହସି ଗଡ଼ିଗଲା ।

ବିନୋଦ ଯେତେବେଳେ ଆସି ଘରେ ପହଞ୍ଚିଲା—ପ୍ରଥମେ ତାର ପାଦ ବନ୍ଦନା କଲା ମଣି । ବିନୋଦକୁ କିଛି ହେଲା । ମଣିର ଏତ ସମ୍ବର୍ଦ୍ଧନା ? ପରେ କଥାବାର୍ତ୍ତାରୁ ଜାଣିଲା, ମଣିର ସେ ଯେ ପୁରୋହିତ—ମଣିର ସେ ଯେ ପଥପ୍ରଦର୍ଶକ, ପୁଣି ଗୁରୁ—ତାର ପ୍ରାଣର ପ୍ରାଣ ସରୋଜର ସାଥୀ—ସେଥିପାଇଁ ଏ ସମ୍ବର୍ଦ୍ଧନା ! ମଣି ପ୍ରଥମେ ପ୍ରଥମେ ନ ଜାଣିଲା ପରି ବ୍ୟବହାର କଲା । ମାତ୍ର ପରେ ବିନୋଦ ପାଖରେ ଧରା ପଡ଼ିଲା । ବିନୋଦର ରହସ୍ୟମୟ ମୁଖ ଦି'ପଦ କହିବାକୁ ଭୁଲିଲା ନାହିଁ ।

ଏଥର ସୁନାର ଦଳ ଜୀବନ୍ତ ମୂର୍ତ୍ତି ଧରି ସେମାନଙ୍କର ଅଙ୍ଗ ଧୀରେ ଧୀରେ ପରଶିଲା ।

ଏହି ସମୟରେ ବିନୋଦ ଘରେ ବିଷମ କୋଳାହଳ ଆଣି ଘଟାଇଲା । ସେ ଜାଣେ ନାହିଁ, ସରୋଜର ପିଲ୍ଲୀ ଏପରି କଳଅ-ଶେରଣୀ । ସେ ଘରକୁ ଯାଉଥିଲା, ପଡ଼ିଲା ତାଙ୍କ ହାବୁଡ଼ରେ ବୁଢ଼ୀ ତାକୁ ଆଦରରେ ପାଖକୁ ଡାକି ନେଲେ, ଆସନ ଖଣ୍ଡିଏ ପକାଇ ଦେଲେ । ଝିଅ ମୂର୍ତ୍ତିମନ୍ତ୍ରୀଙ୍କୁ ପାନ ଦକ୍ଷିଣା ଦେବାକୁ କହିଲେ । ବିନୋଦ ବସିଲା । ତାକୁ ଚୂପ୍ ଚୂପ୍ କରି ପଚାରିଲେ—

"ହଇରେ ବାପ ! ତୁ କଥାଟା ବୁଝିଥିବୁ । ଦରୋଜ ତ କଥାଟା ଖୋଲି କହିଲ ନାହିଁ, ଖାଲି କହିଲ—ପିଉସି ! ମୋର ବିବାହ ଅସନ୍ତା ଶୁକ୍ଳ ଦଶମୀକୁ ହେଉଛି—କଣ ପାଜୁଷୀଘରେ କଲେ ନା ପୁରୋହିତଙ୍କ ଘରେ କଲେ ? ଶୁଣୁଚ ସବୁ ସବୁ ବାମନ ମିଶ୍ର କରୁଚ ? ଅଲେ ମା, ଅଲେ, ବାମନ ମିଶ୍ର ତ ମୋର ଛାଇ ଦେଖି ପାରେ ନାହିଁ । କଣ କଥାଟା କହିଲୁ ବାପ ?"

ବିନୋଦ ମୁରକିହସା ଦେଇ କହିଲା—"ନାଇଁ ଏଇ ପାଖରେ କେଉଁଠି ବାହା ହେଉଚ । ସେ ସ୍କୁଲରେ ପାଠ୍ କରୁଚ—

"ଆରେ କଣ ଖିରସ୍ତାନଅ କି ରେ—ଆଜ ପାଠ କିଏ ପଢ଼ିଚ ମ ? ଦୁଃଖୀ କି ଲୋକ କେହି ତ ପାଠ ପଢ଼ିନାହାନ୍ତି ! ଅଜ କିଏ, କଥାଟା ଖୋଲି କହମ ? ଏତେ ଲୁଚୁଲୁଚ କିଆଁ ? ଏଠି ଆଉ କିଏ ଅଛି କି ?"

ବିନୋଦ କହିଲା—"ହଁ, ଗୋଟିଏ ଅଛି—ସେ ଭାରି ସୁନ୍ଦରୀ, ଭାରି ବୁଦ୍ଧିମନ୍ତ—ଭାରି ଯତ୍ନ । ତା'ଠୁ ଭଲ ପିଲା ଏ ରାଜ୍ୟରେ କେହି ନାହିଁ ।"

ବୁଢ଼ୀ ଭାବି ଭାବି କିଛି ଠଉକୂଳ ପାଇଲା ନାହିଁ—"ଅଜ କିଏ ସେ ? କିଏ ତ ଚୋଟାଏ ଖିରସ୍ତାନଅ ହୋଇଥିବ ? ସୁନ୍ଦରୀ—ମଲା ! ମୋର, ସୁନ୍ଦର ଅଜ ଦେଖା ନାହିଁ । ଏହି ମଣି ଅଛନ୍ତି ରେ ପୁଅ, ଏ ଘରେ ସେ ଯେମିତ ସୁନ୍ଦରୀ, ସେପରି ସୁନ୍ଦରୀ ହୋଇଥିବେ ?"

ଏତିକିବେଳେ ଖୁବ୍ ସରଳରେ ବିନୋଦ ଟିକିଏ କାଶି କହି ଦେଲା—"ପିଉସି ! ଦରୋଜ ପରା ମଣିକୁ ବାହା ହେଉଛି । ଦୋଷ କଣ ? ମଣିପରି ପିଲାକୁ ଦରୋଜ ବାହା ନ ହେଲେ ସାଜବ ଟିକି ?"

ଶୁଣୁ ଶୁଣୁ ବୁଢ଼ୀର ଚେତା ହଜିଗଲା । ସେ କଣ କହୁଦେଉଥିଲା ପରା ? ଖୋରଣୀ ପାଟିକୁ ଉପର କରି ଆଉ ଥରେ ପଚାରିଲା—"ସତ ପୁଅ ପରା ?"

ବିନୋଦ ଅଦୌ ହସା ହସି କିଛି ନ କରି କହିଲା—"ଆଉ କଣ ତମକୁ ମିଛ କହୁଛି ? ମୋର ଲାଭ କଣ ?"

ଏଥର ବୁଢ଼ୀ ମୁଣ୍ଡ ବୁଲେଇ ନେଲା—"ଆଲୋ, ମାରିଦେଲା ଲୋ—ମାରିଦେଲା ! କୁଳରେ କଳାକନା ଲଗିଦେଲା—ଏ ବୁଦ୍ଧି ତାକୁ କିଏ ଶିଖେଇଲାଣି ? ପିତୃପୁରୁଷ ପାଣିପାଇଁ ଏ ତ ପାଇବେ ନାହିଁ, ମ—କଣ କଲା ? ହଇରେ ପୁଅ ! ସଭୋଜ ପାଇଁ କଣ ଏ ଗୁମାନମୁହାଁଠୁ ସୁନ୍ଦର ଆଉ ମିଳିଲେ ନାହିଁ ! ମୁଁ ଜାଣେ, ସେ କୋଉଠେ ରନ୍ଧା ଭୋଜ ମାଂସ ଖାଉଥିବ । ତା ମୁହଁ, ତା ଆଖି ମୋତେ ଦେଖିଲା ଦିନୁ କହି ଦେଉଛି । ଯାଃ—ଏଟି ଆଉ ଦଣ୍ଡେ ବନ୍ଦ କରି ନାହିଁ । ଝିଅ, କାଲି ସ୍କୁଲ, ଅମର ଶୁଣିଯିବା—!"

ବିନୋଦ ହସି ହସି ପଳାଇ ଆସିଲା । ବୁଢ଼ୀ ଛି—ଛି—ମ—ମ—ଏପରି ଦିନ ତମାମ୍ ହୋଇ ରାତି ୧୨ଟା ଯାଏ ହେଲେ । ତାପରେ ଥାଳୁଅ ଲଗେଇ ଏଥର କାଟି କୁଠା ଘଜଭାଟର ଲାଗି ପଡ଼ିଲେ । ଲେଭେଇ ସ୍ପେରେଇ କୁଟି ଗଣ୍ଡେ ଖଇ—ଗଣ୍ଡେ ମୁଗ ଏବେ କେତେ କଣ ହରୁ ରଖିଥିଲେ, ତାକୁ କନାରେ ବାନ୍ଧି ସଜାଡ଼ି ପଠାଇଲେ ! ଝିଅକୁ କହିଲେ—"ଝିଅ ! ଲୋକ ହସିବେ—ଏଠୁ ଆଉ ଦଣ୍ଡେ ରହି କରି ନାହିଁ । ସମସ୍ତେ କହିବେ ତାଙ୍କ ଘରେ ୭୦ ବର୍ଷ ବୁଢ଼ୀଟେ ଥିଲା, ସେ କିଛି କହିପାରିଲା ନାହିଁ । ଭିତର କଥା କିଏ ବୁଝିବ ଲୋ ଝିଅ !"

ରାତି ପାହିଲା । ହଠାତ୍ ନ ଜାଣିଲା ପରି ହୋଇ ଆସି ପଚାରିଲା, "ପିଉସି ଅଜ ଭ ଦଳକୁ କିଆଁ ଚାଧୋଇ ନାହଁ—ଦେହ କଣ ଖରାପ ଅଛି କି ?"

ବୁଢ଼ୀ କହିଲା—"ନାଇଁରେ ପୁଅ, ବାହାରେ ନଇରେ ଗାଧୋଇବ । ମୋତେ ଗୋଟେ ଲୋକ ଠିକିଏ କରିଦେ । ମୁଁ ଯାଏଁ ଭିତ୍ର । ଅମେପରି ଜାଣିବା ଶୁଣିବା ଲୋକଗୁଡ଼ାକ—ଏକଥା ପଚାରିବେ ନାହିଁ ।"

ସରୋଜ କହିଲା—"କି କଥା ପିଉସି !" "ତବୁ ଶୁଣିଛୁ ରେ ବାବୁ, ଶୁଣିଛୁ, ଯଃ—ଆଜ କହି ଲାଭ କଣ ? ମାଲିକା କଥା ତ ଘଟିଗଲା । ଘୋରକଲି ପହଞ୍ଚିଗଲା । ହାତରେ ବାଘ, ଘୂରେ ରହି ଘର ଦୁଆର ଭର ।"

"ପିଉସି ! ସେ ତ ଅସୁର ଭେଟେଡ ଦଳ ଅଛି । ଏତେ ଡର ଡର କାହିଁ ହଉଛ ?"

ବୁଢ଼ୀ ଆଉ ଶୁଣିଲା ନାହିଁ । ସରୋଜକୁ ଯିବା ପାଇଁ ବଡ ବ୍ୟସ୍ତ କରି ପକେଇଲା । ସରୋଜ ମଠରୁ ଆଣି ହାଜର କଲା । ମଣିହାଟିରେ ୧୦୦ଟଙ୍କା ଦେଲା । ବୁଢ଼ୀଙ୍କୁ ୫୦ଟଙ୍କା ଲେଖାଏଁ ଦେବା ପାଇଁ ଆଉ ଆଣିଥିବା ପାଞ୍ଚଅଲଙ୍କାର ପ୍ରଭୃତି ପିଉସୀଙ୍କ ଭଉଣୀକୁ ଦେବା ପାଇଁ ତା' ହାତରେ ଦେଲା ।

ମହାସମାରୋହରେ ବୁଢ଼ୀ ମଠର ସକାଳୁ କରି ବର୍ଣ୍ଣଶଯ୍ୟାକ ପିଉସୀଙ୍କ ଛାଡ଼ ବାହାରିଲେ । ଯେତେ ବୁଝାଇଲେ ବୁଝିଲା ନାହିଁ । ସେ ଯିବାକୁ ନାହାଁତ ଅଡ଼ି ଧରି ବସିଲା, ଶେଷରେ ତାହାହିଁ ହେଲା । ବୁଢ଼ୀଙ୍କୁ ବିଦାୟ ଦେବାପାଇଁ ସମସ୍ତେ ମଠରେ ରହିଲେ । ମଣି ଯିବାଟା ବୁଢ଼ୀକୁ କିଂବା ତାର ଝିଅକୁ ଭଲ ଲାଗିଲା ନାହିଁ । ପୁଣି ମଣି—ବୁଢ଼ୀ—ଆଉ ତାଙ୍କ ଝିଅ ଏ ବସିଲେ ଗୋଟାଏ ମଠରେ ତାଙ୍କ ବୁଜୁଲି ମୁଜୁଲି ଧରି—ଅନ୍ଧାରେ ବନୋଦ—ସରୋଜ—'ଧବ' ବସିଲେ ।

ମଠର ସ୍ୱଳ୍ପ । ମଣିକୁ ମା ଝିଅ ଆଦୌ ଛୁହିଁଲେ ନାହିଁ । ବଡ଼ ଖିଲ୍ ଖିଲ୍ ହେଉଥାନ୍ତି । ଚକ୍ଷି ଧାଅନ୍ତି ପରି—ମାଙ୍କ ପାଖରେ ଯେ ଆଉ ପାଖକୁ ଡାକିବାର୍ ଚେଷ୍ଟା କରିଛି—କିପରି କଣ କହିବେ; ତେବେ ଗର ଗର ହେଉଥାନ୍ତି ।—ଏଇଟା କିଏଁ ଆମ ପାଖରେ ଆସିଛି ! ମନେ ମନେ ଭାବୁଥାନ୍ତି, ପଇସା ଦିଅଣି କରି ସରୋଜ ବାଟ ଛ' ଯୁଝା ହେଲା ନାହିଁ ? ସବୁ ଏଇ ନଟକିଆ ନଟବରଙ୍କ ! ମା ଝିଅ କଣ କଥା-ବାର୍ତ୍ତା ହେବାକୁ ମନ କରୁଥିଲେ, ମାତ୍ର ହେବାର କୌଣସି ସୁବିଧା ପାଇଲେ ନାହିଁ । ତେବେ ମଣିକୁ ନିହାଳି ବାର ଢଗରେ ଆଖି ବୁଲାଉ-ଥାନ୍ତି ।

ଏହି ସମୟରେ ମଣି ଠଙ୍କାଗୁଡ଼ିକ କାନରୁ ଫିଟେଇ ଆଗ ଭାଗେ ପିଉସୀଙ୍କ ହାତରେ ଗୁଞ୍ଜିଦେଲା । ଏଥର ପିଉସୀ ଚମକି ପଡ଼ିଲେ । ବୁଢ଼ୀଙ୍କର ସଙ୍କୋଚ ଭାବ ଦଣ୍ଡକେ କୁଆଡ଼େ ଚାଲିଗଲା । ସ୍ନେହରେ ~~ଖୁସିରେ~~ ମଣିର ଥୁଉଁଷି ଦେଇ କହିଲେ, "ଆଉଲା ମା, ଦଉଡ଼ୁ କିଏଲା ?—ଏ ଝିଅ ସାରିଜୀବନ ତ ପୋଷିବୁ । ତୁ ତ ଆମର ।"

ଏହି ସମୟରେ ମଣି ଆଉ ପାଖରେ ଝିଅଙ୍କ ହାତରେ ଗାଳି ୧୦ଟି ଧରାଇ ଦେଇ ଧୀରେ ଧୀରେ କହିଲା—"ନାନି ! ଏଇତକ ରଖିଥାଅ, ବାଟଖର୍ଚ୍ଚ ହେବ ରକା କରିବ । ଆହା, ତମେ ତ ସ୍କୁଲ ଯାଉଛ—ପୁସ୍ତି ଆସିବ ?"

ବକୁଲି ଆଲୁଅ ଧପ୍ କରି ଯେପରି ଜଳି ଉଠେ ଠିକ୍ ସେହିପରି ଆଖି ମିଟ୍ଟିଲାଗିଲେ ମା ଝିଅଙ୍କର ପରିବର୍ତ୍ତନ ଦେଖି ଆଶ୍ଚର୍ଯ୍ୟ ଲାଗିଲା । ଏଥର ମା ଝିଅ ମୁହଁକୁ, ଝିଅ ମା ମୁହଁକୁ ଚାହିଁ ଅସ୍ୱସ୍ତି ଭାବକୁ ଲୁଚେଇଦେଲେ । ଆହା, ସେମାନେ ଏଇ ଶିରୀଷକୋମଳ ଦେହକୁ କି କଷ୍ଟ ଦେଇ ନାହାନ୍ତି—କି ବାକ୍ୟବାଣ ମାରି ନାହାନ୍ତି । କୋଉ ପୂର୍ବରେ

ଏକୋଡ଼ ଦଶ ଟଙ୍କା ଲେଖାଏଁ ସେମାନେ ହାତରେ ଧରିଥିଲେ ? ବୁଢ଼ୀ ଏଥର ମଣିକୁ କୋଳକୁ ନେଇଗଲା—ତାଙ୍କର ଝିଅଜନ୍ମ ପାଖକୁ ନଗିଗଲା । ବୁଢ଼ୀ ଘଁକେଇ କରି କହିଲେ—"ଅଲୋ ଝିଅ, ମୁଁ ଚାଲି ଯାଉଚି ବୋଲି ଦୁଃଖ କରୁଚୁ କି ? ନାଇଁ ମା, ମୁଁ ଯାଉଚି କୁଆଡ଼େ ? ଅଲୋ, ଅନେ ଯାରା ବିଧବା ବୁଢ଼ୀ ମଣିଷ । ତମର ଏ କାମଟ ସରିଗଲା ପରେ ମତେ ଡାକିଲେ ମୁଁ ଡଲଟାରେ ପଡ଼ିଥିବି । ମୋ ବାମ୍ଭଣୀ ମୋର କୁଳବଧୂ ହେବ । ଅଲୋ, ପୁରୁଷଠାଉଁ ଆମେ ପରା ଝିକିଏ ଭଲ୍ପାକୁ । ଉଚେ ଏବେ ପାଞ୍ଚକଥା ମୁଁ କହି ଦଏ—କିଆଁ କହେ ? ଦେମିତ ଅଗ ଅଗକହନ୍ତି । ଏ ପରା ନୂଆକଥା ହବ । ଅଇ ସୁଲକ୍ଷଣୀ ହେଇ ଥା—ମା—ଅହା, କ ସୁନ୍ଦର ଦେହ । ମୋ ମା'ଙ୍କ ଘରଗର ଅପସରୀ ।" ଏଥର ବୁଢ଼ୀ ମଣିକୁ କେତେ ଗେଲ କଲେ । ମଣି ପଣତରେ ଲୁଚାଇ ରଖିଥିବା ଯାହଁ ଖଣ୍ଡି ଅଉ ଅଳଙ୍କାରଗୁଡ଼ିକ ବୁଢ଼ୀଙ୍କୁ ଦେଇ କହିଲା—"ପିଉସି ! ଏହାକୁ ଜାଅ କି, ନାନୀ ଶାଶୁଘରକୁ ଗଲା ବେଳେ ତାକୁ ଦବ ।" ଏଥର ମା ଝିଅ ଦୁହିଙ୍କ ଆଖିରୁ ଲୁହଧାର ଗଡ଼ି ପଡ଼ିଲା । ଏଭଳି ଯାଟ ତାଙ୍କ ଜନ୍ମରେ ସେ ଦେଖି ନାହାନ୍ତି । କଥାରେ ଯିନା କୁବେରଭଣ୍ଡାର ବର୍ଣ୍ଣନା କରିପାରନ୍ତି, ମାତ୍ର ଘରରେ କେଉଁଠି କଣ ଅଛି ? ସେ ସବୁକୁ ବୁଢ଼ୀ ଝଟ୍ କରି ଆଉ କିଏ ଦେଖିବ, କି ଡ୍ରାଇଭର୍ ଟା ଦେଖିଯାଇ ପରେଜ ପ୍ରଭୁଙ୍କ କହିଦବ, ଏଥିପାଇଁ ତାକୁ ଲୁଗାକାନିରେ ଲୁଚାଇ ଦେଲେ । ହାୟ, ତାଙ୍କର ଘରମଣି ମଣି କଣ ମତେ ଦେଖିବାକୁ ଯେପରି ଅସାମାନ୍ୟା ସୁନ୍ଦରୀ—ସେମିତି ଗୁଣରେ କଣ ସର୍ବଗୁଣସମଲଂକୃତା ! ମଣିକୁ ଏଥର ସାଦର ଗୌରବରେ ମା ଝିଅ ପୋଛି ପକାଇଲେ ।

"ମା, ମା, କଷ୍ଟ ଦୁଃଖ କରିବୁ ନାହିଁ—କାନ୍ଥା ଧରିଗଲା ମାତ୍ରେ ନାନୀକୁ ପଠେଇ ଦେଲେ ମୋର ସେତେ କାମ ଥାଉ ମୁଁ ଆସିବି—

କିଛି ଚିନ୍ତା କର ନାହିଁ । ସବୁ ଦିନ ସୁଖରେ ସୁଖରେ ଅଛନ୍ତି କହୁଛେ ।"

କାନ ପାଖରେ ମୁହଁ ରଖି ଚୁପ୍ ଚୁପ୍ କହିଲେ—ବାସ୍ତାଣି ! ଯେତେ ଥର ମା ଝିଅଙ୍କୁ ଶଶୁରଘରେ ଲୋକ୍ଡ଼ାକରୁ ନେବେ ବଞ୍ଚିବାର ଦଦନ ଥିବା ତ୍କେଇ ପଠେଇଲୁ । ଯା, ମୋର ତ ଛିନଡ଼ାଳ ଯାଇଚି—କିଏ ପଚ୍ଚାରୁଚଲେ ମା ? ଝିଅ ମୋର ମଧ୍ୟ ଘରେ ଥିବ । ଅଧ୍ୟ ମାଇକିନାଙ୍କ ଏ ଘରକୁଡ଼ ଅଇଲେ ଭଲହେବ—କିଣ କହୁଚୁ ?"

ମଣି ମନେ ମନେ ଭାବୁଥାଏ—ଧନର—ଅର୍ଥର—ମହତ୍ତ୍ୱ, ଯେ ତ ବେଶ୍ ପରିବର୍ତ୍ତନ ମନୁଷ୍ୟକୁ କରିପାରେ—ମାତ୍ର କ୍ଷଣକପାଇଁ—ଯେତେବେଳେଯାଏ ଗାଡ଼ିରେ ତେଲ ଅଛି ଚେତେବେଳେ ଯାଏ ସେ ଚାଲୁଛି । ତେଲ ସରିଲେ ସେ ବନ୍ଦ । ଅର୍ଥ ଦେବା ପର୍ଯ୍ୟନ୍ତ ସମସ୍ତେ ଆପଣାର—ଅର୍ଥ ସରିଲେ କେହି କାହାର ନୁହନ୍ତି । ଏ ମା' ଝିଅଙ୍କ କଥା ଶୁଣି ତାକୁ ହସ ମାଡ଼ିଲା । ଏମାନେ ତାକୁ କି ବାକ୍ୟ ବାଣରେ ଜର୍ଜରିତ କରୁ ନ ଥିଲେ—ମାତ୍ର ବର୍ତ୍ତମାନ କୋଡ଼ରେ କାଖରେ ବସାଇ କି ମଧୁର କଥା କହୁଛନ୍ତି ପୁଣି କି ମହତ୍ତ୍ୱ ବର୍ଣ୍ଣନା କରୁଛନ୍ତି । ହାୟ ! ସଂସାରର ରୀତି ଏହିପରି ।

ବର୍ତ୍ତମାନ ବିଦାୟର ସମୟ ଆସି ପହଞ୍ଚିଲା । ଗାଡ଼ି ଛୁଟିବା ହେଲା । ପିଉସୀ—ଝିଅ ଦୁହେଁ ମଣିକୁ କୋଡ଼ରେ ପୂରାଇ ଭୁଚୁକୁଚାଏ କାନ୍ଦି ପକାଇଲେ । ତାକୁ ଛାଡ଼ି ଯିବା ପାଇଁ ଯେପରି ତାଙ୍କର ମନ ଅଦୌ ହେଉ ନାହିଁ । ଏ ଅଭିନୟ ବିନୋଦ ଆଉ ସରୋଜ ଦେଖି ଆଶ୍ଚର୍ଯ୍ୟ ହେଲେ । ମୁହଁରେ ରୁମାଲ ଦେଇ ହସିଲେ । ବାଃ—କି ଚମତ୍କାର ପରିବର୍ତ୍ତନ ! ତେବେ ମଣି ଏମାନଙ୍କର ନଜର ଏତେ ଦୂର । ଆମେ

ସବୁ ପର ହିଂସ୍ର ବିନୋଦ !' ବିନୋଦ କହିଲା—"ହିଁ—ଦେଖିଅଛନ୍ତି ।"

ବୃଦ୍ଧା ମଣିକୁ ଆଶୀର୍ବାଦ ଉପରେ ଆଶୀର୍ବାଦ ଢାଳି ଦେଇ ଦଦମ୍ମାଣ୍ଡ ଅଞ୍ଜଳି ପକାଇଲେ । ଆଜି ତାଙ୍କର କରାଳ କାଳୀ ମୂର୍ତ୍ତି ଏପରି ପ୍ରସନ୍ନ ବଦନା—ଶାନ୍ତ ମୂର୍ତ୍ତି ଧରିଛି ଯାହା ପୂର୍ବେ କେବେ ହେଲେ ଥରେକ ପାଇଁ ଲୋକ ଲୋଚନ ଅଗୋଚର ଥିଲା ।

ପରୋକ୍ଷ ହସକୁ ମାରି ବିନୋଦ ସହିତ ଯାଇ ପିଉସୀଙ୍କୁ ନମସ୍କାର ହୋଇ କହିଲା—"ଯାଉଛନ୍ତି—ମନେ ପକାଉଥିବ ?"

ଏଥର ପିଉସୀ ଦରୋଜକୁ ପାଖକୁ ଡାକି ଟିକିଏ ଦୂରେଇ ହୋଇ ଛିଡ଼ା ହୋଇ ପିଠିକରେ ତାର ହାତ ଦେଇ କହିଲେ "ବାପା ! ଯାଉଛ—ଡାକ୍ତାଣୀକୁ ଟିକି କହିବ—ସେ କହିବ ଯେ ।"

ଏହି ସମୟରେ ମଣି କାନର ଫୁଲ ଦୁଇଟିକୁ ବାହାର କଲା । ଏହି ଫୁଲ ଦୁଇଟିର ସୌନ୍ଦର୍ଯ୍ୟ ଅତୁଳନୀୟ । ତାର କାନରେ ଲାଗି ଏହା ଯେ କି ମଧୁର ଦିଶେ ତାହା ବର୍ଣ୍ଣନା କରି ହେବନାହିଁ । ତେବେ ସେ ଏହି କାନ ଫୁଲ ଦୁଇଟିକୁ ବଡ଼ ଆଦର କରେ । ଅଳଙ୍କ ଭୂଷଣାର ସାଧାରଣ କେତେ ଖଣ୍ଡ ଗହଣା ଭିତରେ କାନଫୁଲ ତା ନିକଟରେ ଅତି ସ୍ନେହର । ପିଉସୀଙ୍କ ଝିଅର ଆଦର ତାହା ଦ୍ରୁଷ୍ଟେ ଗାଢ଼ସ୍ନେହବା ହେଲେ ସେ ଅନୁଭବ କରିଥିଲା । ତାର ଏହି ଫୁଲକୁ କେତେବାର ଦେଖି କହି ପଚାରିଥିଲା—"ଏହାର ଦାମ କେତେ—ଏହା କେତେଦିନ ଲଗାଇଲଣି ? ଇତ୍ୟାଦି ।"

ମଣି ବୁଝିଥିଲା କି କାଣାର ଏହା ପ୍ରତି ସ୍ନେହ ଅଛି । ସେ ସେଥି-ପାଇଁ ଶେଷ ବିଦାୟ ସମୟରେ କାନରୁ ବାହାର କରି ତା ହାତରେ

ଗୁଞ୍ଜି ଦେଲା । ସେ ପ୍ରଥମେ ଅନିଚ୍ଛା ପ୍ରକାଶ କରୁଥିଲା—ମାତ୍ର ମଣିର ବଳାଯୋରରେ ନେଲା । ମଣିକୁ କୁଣ୍ଢେଇ ଗେଲ କରି—ଆଶୀର୍ବାଦ ଦେଇ—ଉତ୍ସାହେଇ ବୁଢ଼ୀ ଅଉ କିଛି ବିଦାୟ ନେଲେ କାନ୍ଦି କାନ୍ଦି ।

ସରୋଜ, ବିନୋଦ, ମଣି ଅନ୍ୟ ଗାଡ଼ିରେ ଫେରି ଆସିଲେ । ଏଥର ସହର ସ୍ୱର ଉଠିଲା । ମାତ୍ର ମଣି ନିଜ ଦୁଃଖରେ ଏତେ ବ୍ୟାକୁଳ ଥିଲା ଯେ ଅନ୍ୟ ସେମାନଙ୍କ ସହରେ ଯୋଗଦେଇ ପାରିଲା ନାହିଁ । ବରଂ ଆଖିରୁ ଲୁହ ଧାର ଗଡ଼ାଇଲା । ସରୋଜ ଆଉ ସମ୍ଭାଳି ପାରିଲା ନାହିଁ—ହୋ ହୋ ହୋଇ ହସି ଉଠିଲା । "ବାଃ—ଭାରତ ପ୍ରେମ—ପିଉସୀ ତ ଏକବାରେ ହୃଦୟର ମଣି କରି ନେଇଗଲେ । ବାଃ—ଅର୍ଥ କଣ ନ କରେ ?

ଏଥର ମଣି ବିରକ୍ତ ହେଲା—"ନାହିଁ ତା'ନୁହେଁ, ସେମାନେ ଭାରି ଭଲ ଲୋକ— ।"

"ଏଥର ତୁମଙ୍କ ଦୃଷ୍ଟିରେ କିଏ ଭଲ ନୁହେଁ କି ? ବାଇ ଗୁଡ଼ାକଟି ମୁକ୍ତା ବେଣୀ । ହେଉ ହେଉ ପିଉସୀ କଣ ଗୁରୁମନ୍ତ୍ର ଦେଇ ଥିଲେ ? ସମସ୍ତ କଥା ମଣି ଗୋଟି ଗୋଟି କହିଗଲା ସରୋଜର ବିନୋଦର ପେଟ ପିଡ଼ା ହୋଇଗଲା ହସି ହସି । ତେବେ ପିଉସୀ—ଆସିବେ—ଅଚ୍ଛା ।"

ନାନାପ୍ରକାର ହାସ ପରିହାସରେ ସମସ୍ତେ ଘରକୁ ଫେରିଗଲେ । ସେ ଦିନ ସାରା ମଣିକୁ ଦୁହେଁ ଯାକ—ଥଟ୍ଟା ପକାଇଲେ । କିମିତ ସେମାନେ ଉତ୍ତରଖଣ୍ଡରେ ବୁଲୁଁ ଥିଲେ—ରୁ କପର ଠକା ତାଙ୍କୁ ଦେଲା ? ସେଠୁ ବୁଢ଼ୀ କଣ କହିଲା—ସିଏ କଣ କହିଲା । ତାକୁ ବାରଂବାର ଏହି କଥାଟା ଶୁଣିବାକୁ ବଡ଼ ଭଲ ଲାଗିଲା ।

ବିନୋଦ କାଗଜ ପେନ୍‌ସିଲ ଧରି ବସିଗଲା । ଏ ଦୃଶ୍ୟଟାକୁ ନେଇ ଗୋଟାଏ ଗଳ୍ପ ନଲେଖିଲେ ହୃଦୟର ବେଗ ସମ୍ଭାଳି ହେବନାହିଁ । ଗଳ୍ପଟି ଲେଖା

ସହିଲା । ତାହା ସମସ୍ତେ ବହୁବାର ପଢ଼ିଲେ । ବିନୋଦ ବାବୁଙ୍କୁ ଲେଖା ଲେଖି ଚୂଲିବା ସିଙ୍ଗି ଦେଇଥିଲା । କଲେଜରେ ଥିବାଯାଏ ଗୋଟାଏ ଗୋଟାଏ କେବେ ବୁପର ଲେଖୁଥିଲା—ମାତ୍ର ଗୋଡ଼ାଙ୍କୁ ଯାଇ ସେ ଦଣ୍ଡେ ସମସ୍ତ ପାଇଲା ନାହିଁ । ସେଥିପାଇଁ ଗୀତ କବିତା ଏକାବେଳେ ଭୁଲିଥିଲା । ଆଜ ତାର ଗଳ୍ପଟି ଅତି ମନୋହର ହୋଇଅଛି । କବିଙ୍କୁ ତାର ସଂଶୋଧନ ଭାର ଦିଅଗଲା—କାରଣ—ସେ ଅନୁଭବୀ ।

ବିନୋଦ ଚତୁର୍ଦ୍ଦିଗରେ ପତ୍ରଲେଖି ପ୍ରାୟ ୭୦-୭୫ ପରଣ ଯୁବକ ବନ୍ଧୁ ଅମନ୍ତ୍ରଣ କରି ଅଣିଲା । ବନ୍ଧୁମାନଙ୍କର ସ୍ତ୍ରୀ—ଭଉଣୀମାନେ ଆସି ସର ମଣ୍ଡି ପକାଇଲେ । ବିନୋଦର ସ୍ତ୍ରୀ ମଧ୍ୟ ଅଇଲା । ଶୁଭ ଶଙ୍ଖ ଧ୍ୱନି ବାଜି ଉଠିଲା । ହୁଳ ହୁଳ ତାନରେ ଗଗନ ପବନ କମ୍ପିଗଲା । ସଢ଼ୋଶୀ ବ୍ରାହ୍ମଣମାନେ ଓଁକ ମାରୁଥିଲେ ।

( ୭ )

ଦୂର ସ୍ୱର୍ଗ ଧାମରୁ ଦେଖିଯାଅ ବୃଦ୍ଧା ! ଦେଖିଯାଅ—ଶ୍ୟାମସୁନ୍ଦରି ! କପର ମଣି ସହିତ କାଞ୍ଚନର ମିଶ୍ରଣ ଶୋଭା ଚତୁର୍ଦ୍ଦିଗ ମୁଗ୍ଧ କରୁଅଛି ।

ବୃଦ୍ଧ ! ଏ ସୌଭାଗ୍ୟ ଦେଖିବାକୁ ବିଧାତା ତୁମ୍ଭଙ୍କୁ ଇହଲୋକରେ ରଖିଦେଲା ନାହିଁ ତୁମର "ଗୋବର ଗୋଟେଇ" ଆଜ ରାଜରାଣୀ । ଆଜ ଧନେ-ମାନେ-ବିଦ୍ୟାରେ—ସୌନ୍ଦର୍ଯ୍ୟରେ କୁଳୀନତାରେ ଶ୍ରେଷ୍ଠ ସତ୍ୟେନ୍ଦ୍ର କୁମାର ମିଶ୍ର ଏମ୍, ଏ ବି, ଏଲ୍‌ଙ୍କର ସହଧର୍ମିଣୀ—ତାଙ୍କ ହୃଦୟ ପଦ୍ମର କମଳା ।

ଯେଉଁ ବାଳିକା,ଦିନେ ଦରିଦ୍ରଗଣ୍ଡି ପକାଇ ତାହାର ଉପାର୍ଜ୍ଜନରେ ପ୍ରାଣରକ୍ଷା କରୁଥିଲା—ଆଜ ସେ କୁବେର ଭଣ୍ଡାରର ଅଧିକାରୀ—ଆଜ ସେ ଶତ ଶତ ନରନାରୀ—ଦୁଃଖ କ୍ଳିଷ୍ଟ ପରିବାରର ପୋଷଣ କରୁଛି ।

ଏ ସୌଭାଗ୍ୟ ଯାହା ତୁମ୍ଭେ ଦେଖିଲ ନାହିଁ ! କେତେ ଯତ୍ନରେ ପାଳନ କରିଥିଲ । ସ୍ତନ୍ୟ ଅଞ୍ଚଳ ତଳେ ନଜର ରଖି ଦେଇ ବଞ୍ଚାଇଥିଲ, ସ୍ୱର୍ଗରେ ଥାଇ ତାର ସୌଭାଗ୍ୟ—ଦେଖ ।

ମହା ସମାରୋହରେ ବିବାହ ସଂପନ୍ନ ହେଲା । ବ୍ରାହ୍ମଣ ପୁଂଗବ ବାଚସ୍ପତି ଶର୍ମା ଏହିବିବାହରେ ପୌରୋହିତ୍ୟ କଲେ । ବ୍ରାହ୍ମଣମାନେ ପ୍ରଥମେ ପ୍ରଥମେ ନାନାପ୍ରକାର ଗୋଳ ଯୋଗ ଆରମ୍ଭ କଲେ । କିଏ କେତେ ପ୍ରକାର ଭାବଭଙ୍ଗୀ ଦେଖାଇଲେ ମାତ୍ର "ଅର୍ଥେନ ସର୍ବେ ବଶାଃ"—ବିବାହ ଭୋଜି ଖାଇବା ପାଇଁ କଣେ କେହି ଅଟକିଲେ ନାହିଁ ।—ଅନ୍ନଭୋଜନକୁ ବନ୍ଧୁବାନ୍ଧବମାନେ ଆସିବାକୁ ଇଚ୍ଛାକଲେ ନାହିଁ-ମାତ୍ର ଦେଖିଲେ ଯେ ଶିକ୍ଷିତ ଯୁବକ ବାପାମାନଙ୍କୁ ଛାଡ଼ି ଗୁଲି ଆସିଲେ । ତେଣୁ ବୁଢ଼ାମାନେ ଅଭିଶାପ ବର୍ଷଣ କଲେ । ମାତ୍ର ଅବ୍ରାହ୍ମଣର ଯୋଗେ ଅଭିଶାପ ଅଟେଦୀ ଗୁଣକଲାନାହିଁ । ଯେଉଁମାନେ ସଭେଇ ସ୍ୱୟଂ ଭୁଅର ଭୁଅର ବୁଲି ବୁଢ଼ାମାନଙ୍କୁ ଡାକିଲା ସେତେବେଳେ କେତେଜଣ ଏ ପାଖ ସେପାଖ ହୋଇ ବସୁର କଲେ ।

ବସୁରରେ ଯିବାକଥା ଠିକ ହେଲା । ଆସିଲେ ଖାଇଲେ—ମାତ୍ର ଯିବାବେଳେ କଥାଟାକୁ ସ୍ୱୀକାର କଲେ ନାହିଁ—କେହି କେହି ଗାୟତ୍ରୀ ପାବନୀ କରିବେ ବୋଲି ବଡ ପାହିବାକୁ ଅନାଇଁ ବସିଲେ—କେହି ବା "ଘୃତ—ପକ୍ୱାନ୍ନ ଭୋଜନଂ, ନଦୋଷ ଭାକ୍" ଏହି ସୂତ୍ରରେ ଦୋଷ କ୍ଷାଳନ କଲେ ।

ସେମାନଙ୍କର ହୃଦସ୍ଥ ବୁଝିଲି ନାହିଁ । ଏକଭରଣୀରେ ଭୁଇଟି ପାପ (?) ତାଙ୍କୁ ବ୍ୟସ୍ତ କରିଦେଲା । ଏଣେ ବ୍ରାହ୍ମଣ ହୋଇ ବୃଷଳୀ କନ୍ୟା (ଯୁବତୀ) ବିବାହ ପୁଣି ସଧବା ସ୍ତ୍ରୀ । ବାପ୍‌ରେ—କି ଅଘଟନ କଥା !

ତେବେ କାମପଡ଼ିବା ପରେ ୧୫।୨୦ ଦିନ ଏପରି ଆଲୋଚନା ଲାଗିଲା । ମାତ୍ର ଯେମାମଣିଠାରୁ ଗାଁର ଲୋକେ ଯେତେବେଳେ ପାଞ୍ଚ କଥା ପାଇଲେ, ପାଞ୍ଚ ଅଭାବ ପୂରଣ କଲେ ଏବଂ ତାର ସ୍ୱରୂପ—ସୁଗୁଣ ଦେଖିଲେ, ସେତେବେଳେ ସବୁ କଥା ଭୁଲିଗଲେ । ମଣିଯୋଗେ ସେମାନଙ୍କର ଅଭାବ ଆଉ ରହିଲା ନାହିଁ । ମଣି ଯୋଗେ ସ୍କୁଲରେ ତାଙ୍କ ପିଲାଙ୍କମାନେ ପାଠ ପଢ଼ିଲେ ।

ବିନୋଦ ପଣ୍ଡିତ ପ୍ରାୟ ଦୁଇମାସ ଯାଏ ରହିଲା; ମାତ୍ର ତାର ପିତାଙ୍କର ଅଗ୍ରହ ତ୍ୱରାରେ ସେ ଯିବାକୁ ଉଦ୍ୟତ ହେଲା । ତାର ପିତା ପୁଅର ପ୍ରତ୍ୟେକ କାର୍ଯ୍ୟକୁ ସମର୍ଥନ କରୁଥିଲେ । କଥା ପଡ଼ିଲେ କହୁଥିଲେ—"ଆହେ, ଆମଯୁଗଥିଲା ଅଲଗା—ଏ ସବୁ ନୂଆଯୁଗରପିଲା । ତାଙ୍କ ମନଇଚ୍ଛାରେ ସେ ଚାଲିବେ ନାହିଁ ଆଉ କଣ ଆମର ଏଇ ମୂର୍ଖ କଥା ଗୁଡ଼ାଏ ଶୁଣିବେ । କହିଲ—କଣ ପାଠପଢ଼ା ଆମର ? ଏତେ ଦେଶ ବିଦେଶର କଥା—ଏତେ ଶାସ୍ତ୍ର ଆଲୋଚନା କୋଉଁ ପଣ୍ଡିତ ହିରୁଛନ୍ତି? ଆମ କ୍ଷୁଦ୍ର ଗଣ୍ଡିଟି ଭିତରେ ଆମେ ଆବଦ୍ଧ ରହି କହୁଛୁ—ସବୁ ବ୍ରହ୍ମାଣ୍ଡ ଦେଖୁଛୁ । ସେ ଯେଉଁ ଶାସ୍ତ୍ର ପ୍ରମାଣ ଦେଉଛନ୍ତି ତେବେ କଣ ଦେଉଛ ତମ ଭିତରୁ । ଖାଲି କଥା ।"

ବୁଢ଼ା ନାତିନାତୁଣୀଙ୍କୁ ବଡ଼ ଭଲ ପାଉଥିଲେ । ତାଙ୍କର ଧାରଣା ଏମାନେ ପାଠ ସାଠ ପଢ଼ିଛନ୍ତି ଯେଉଁ କାଠ କରିବେ ସେଇଟା ଆମମାନଙ୍କୁ ଅପେକ୍ଷା ଭଲ ନ ହେବ କାହିଁକି ? କେତେଗୁଡ଼ାଏ ଲୋକ ତାଙ୍କୁ ଏହି କଥା ଶୁଣି ବଡ଼ ଅସନ୍ତୁଷ୍ଟ ହୁଅନ୍ତି, କହନ୍ତି—"ଦେଖ ବୁଢ଼ାଟେ—ଘନକାଳ ଗଲା । ଏଥି ଅବସ୍ଥାରେ କି କଥା କହି ପିଲାଗୁଡ଼ାଙ୍କର ମନ ମୋଡ଼ି ଦେଉଛ ।"

ବିନୋଦ ଯେବେ ତାର ସ୍ତ୍ରୀକୁ ଧରି ତାର ଗାଁକୁ ଚାଲିଗଲା। ମଣି ଆଜି ସବୁଠାରୁ ତାକୁ ପ୍ରାପ୍ୟ ଅଧିକାରଟିଏ ଛାଡ଼ିଯାଇ କାନ୍ଦି କାନ୍ଦି ଫେରି ଆସିଲେ। ମଣି କିଛିଦିନ ପରେ ବିନୋଦ ଗାଁକୁ ଯିବ ବୋଲି ଅମ୍ବିକାକୁ କହିଲା। ବିନୋଦ ସ୍ତ୍ରୀର ନାମ ଅମ୍ବିକା। ସେ ଯେପରି ସୁନ୍ଦରୀ ସେପରି ଗୁଣବତୀ। ତେବେ—ତେତେ ପାଠ ପଢ଼ିନାହିଁ। ବିନୋଦ ଯାହା ଅଳ୍ପ ପଢ଼ାଇଛି। ବିନୋଦ ମଧ୍ୟ ପାଠ ଲୋଡ଼େ ନାହିଁ। ଯାହା ସ୍ତ୍ରୀଠାରେ ଥିବାର ପ୍ରୟୋଜନ ସେ ତାହା ଅମ୍ବିକାଠାରୁ ପାଇ ସନ୍ତୁଷ୍ଟ। ଅମ୍ବିକାର ଗୁଣରେ ମଣି ଏପରି ମୁଗ୍ଧ ହୋଇଥିଲା ଯେ, ତାକୁ ପ୍ରାଣଠାରୁ ଅଧିକ କରି ଭଲ ପାଉଥିଲା। ଦୁହେଁ ଦୁଇ ଭଉଣୀ ପରି ଚଳୁଥିଲେ। ତାଙ୍କ ଭିତରେ ଏହା ମଧ୍ୟରେ କଥା ହେଲା ଯେ, ସେମାନେ ସମସ୍ତେ ନେଇ ଏକାଠି ରହିବେ। ଅମ୍ବିକା ଥିଲା ଗୃହିଣୀ ପରି ବଡ଼ ସ୍ଥିର। ମାତ୍ର ମଣିର ଶିଶୁଭାବ ଯାଇ ନ ଥିଲା। ତାର ଗୃହିଣୀର ଦାୟିତ୍ୱରେ କେତେକ ଅଭାବ ଥିଲା। କଳ୍ପନାର କଳ୍ପଲୋକରେ ଭାସିବା ତାର ସ୍ୱଙ୍ଗ ବିଶେଷ ଅନୁଭୂତ।

ଅମ୍ବିକାକୁ ମଣି କଣ ଦେଇ ନ ଥିଲା—ଧନ ପଦାର୍ଥତ ଯାହା ଦେବାର ଦେଇଥିଲା—ସେକଥା କିଏ ପଚାରେ—ତେବେ ସେ ଆଜି ଗୋଟିଏ ଅମୂଲ୍ୟ ପଦାର୍ଥ ଦେଇଥିଲା—ତାହା—ତାର ପ୍ରାଣର ଭଲ ପାଇବା।

ସେଥି ମଧ୍ୟରେ ମଣି ଥିଲା ସ୍ୱର୍ଗର ପାରିଜାତ ଅମ୍ବିକା ଥିଲା ମର୍ତ୍ତ୍ୟର ମନ୍ଦାର—ଉଭୟଙ୍କର ବିଦାୟ ମିଳନର ଦୃଶ୍ୟକୁ ସ୍ମୃତିକୋଷର ଅମୂଲ୍ୟ ନିଧି କରି ଉଭୟେ ଭିନ୍ନ ଭିନ୍ନ ବାଟରେ ଗଲେ।

କବିଙ୍କ ବାଣୀରୁ ଶୁଭିଲା—

ବିରହ ଦହନେ ନ ତାତିଲେ ତନୁ
ମିଳନ ମାଧୁରୀ ପାଶୋରନ୍ତା ମନୁ

ନଥିଲେ ବଜର ଚରଣ୍ଟ୍ରା ଘନ୍ଟୁ
ସୁଧାରସ ଧାରା କେ କରନ୍ତା ପାନ ।

ସମାଜର କୁସଂସ୍କାର-ଗୌରବ ଚୂଡ଼ାକୁ ସବେଗ ଭାଙ୍ଗିଦେଇ କେତେ ସମାଜ ମିବକ୍କଠାରୁ ଗାଲିଖାଇଲା, ମାବ ଦେଶର ପ୍ରତ୍ୟେକ ସତ୍ ପବିକ୍ରା ତାର ମଙ୍ଗଳ ଚନ୍ତାକକ୍ଲେ-ତାକୁ ଧନ୍ୟବାଦ ଦେଲେ । ଏ ଶତାବ୍ଦୀର ନୂତନତ୍ୱରେ ପବିକ୍ରା ମଣ୍ଡଳୀ ଛନ୍ଦ ମାଳରେ ଭୂଷିତ ହୋଇ କାଠଭର ସୀମା ରଖିଲେ ନାହିଁ । "ଶେଷରେ ମଣି-ସ୍ୱରେକ" ଛନ୍ଦ ଦର୍ଶନକୁ ନବଭ୍ୱବରେ ସମ୍ମୁଖ କର ଦେଖାଇଲା ।

ସେମାନଙ୍କର ପ୍ରଦର୍ଶିତ ପଥରେ ଦେଶର ଶତ ଶତ ଯୁବକ ଅଗ୍ରସର ହୋଇ ପଥିକ ହେଲେ । ସେମାନଙ୍କର ସୁପୂର୍ଣ ପୌରୁଷ ଚତୁର୍ଦ୍ଦିଗରେ ଶବ୍ଦରତ ହେଲା । ଲେଖକ ଶତରୀ କର୍ତ୍ତବ୍ୟ ନକରୁ ଯନ୍ତ୍ରରେ ମୁକ୍ତିବାରେ ନାଁଟି ଦେଖାଇବା ପାଇଁ ଲେଖିଲା—

"ସେ ପୌରଟେ ବ୍ରାହ୍ମଣର ଦର୍ପ ହେଲା ଚୂନା ।
ଶୃଣ୍ଟ୍ରାଳ ରଚଲା ନଭ ଦେବ ଅରଚନା ।
ପଛତ ସେ ପୌରବରେ ହୋଇଲା ଜାଗ୍ରତ ।
ଶଠତା ଭଣ୍ଡତା ଯେତେ ଦଳଲା ମହତ ।"

ସନାତନ ଧର୍ମ ସଂସ୍କୃତ ହେଲା—ଅର୍ଯ୍ୟ ଗୌରବ ରବ ଶଙ୍କ ଉଠିଲା ।—

+ + +

ବାହ୍ମ ସନ୍ତ ବଗିଚ୍ଚରେ ଗୋଟିଏ ଗଛ ମୂଳେ ବସି ସବେଗ ଗୁହିଁଥିଲା ଦୂର ଆକାଶକୁ ଏବଂ ତାର ଜୀବନର ଲକ୍ଷ୍ୟକୁ ଚନ୍ତା ସ୍ୱୟଂକୁ ଝାଣୁଥିଲା । ତା ମନରେ ଗୋଟାଏ ଅପୂର୍ବ ଆନନ୍ଦ ଆସିଲା,

ତାର ଜୀବନ କି ସୁଖମୟ ! ଦୁଃଖ ଯେ ସେ ପାଇନାହିଁ, ପାଇବ ନାହିଁ ତାହା ନୁହେଁ । ମାତ୍ର ସେ ଦୁଃଖକୁ ଦୁଃଖ ଭାବନାହିଁ ବା ଭାବିବ ନାହିଁ । କାହିଁକି—ଯେପରି ତାର ମନର ଭାବ ଅନୁଭବ କରି ସୁନ୍ଦରୀ ରାଣୀ "ନେମାମଣି"—ତେଣୁ ଗାଇ ଗାଇ ଆସି କୋଳରେ ପଶିଗଲା—ସେହି ଅତୀତର ଅନ୍ଧକାର ପାଶୋରି ଭବିଷ୍ୟତ୍‌ର ଭାବନାମରୀଚିକା ଓମର-ଙ୍କର ଲଳିତକାନ୍ତ ବର୍ତ୍ତମାନ ଚିନ୍ତାର କବିତା—

"ଏଇଠାରେ ଏଇ ତରୁତଳେ
ତୁମେ ମୁଁ ବସି କୁତୂହଳେ
ଜୀବନର ଯେ କେତୋଟି—ଦିନ
କାଟିଦେବା ହେଲେ ।
ସଙ୍ଗେ ଥିବ ସାମାନ୍ୟ ପାନ
ଅଳ୍ପ କିଛି ଆହାର ମାତ୍ର
ଖଣ୍ଡିଏ ମାତର ଛନ୍ଦ ମଧୁର କାବ୍ୟ କଳା ବହି-
ଥିବ ତୁମେ ମୋହର ପାଶେ
ଗାଇବା ଦୁହେଁ ପ୍ରେମୋଲ୍ଲାସେ
ମରୁ ମହିରେ ସ୍ୱପ୍ନ ସ୍ୱର୍ଗ କରିବା ବିରଚନ
ଗହନ କାନନ ହେବ ସିନା
ପରଶ ନନ୍ଦନ ।"

୨ ଯୁନ୍ ୧୯୨୮
-ଘାଟଶୀଳା-
ସିଂହଭୂମ

ମୁଦ୍ରାକର—ଶ୍ରୀ ବାଳକୃଷ୍ଣ କର ବି. ଏ., ସାରସ୍ୱତ ପ୍ରେସ୍, କଟକ

# ଭାରତୀ ତପୋବନ ସଂଘର

## ପ୍ରକାଶିତ ପୁସ୍ତକ

## କବି ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ

୧ ରଘୁଅରକ୍ଷିତ ( ବିରାଟ ସଚିତ୍ର ଉପନ୍ୟାସ ) ଟ ୨୧

୨ ପରଶମଣି ( ୨ୟ ସଂସ୍କରଣ ) ଟ ୦ ୬

୩ ଅର୍ଚ୍ଚନା ( କଳିତ ଲଳିତ ସଂଗୀତ ପୁସ୍ତକ ) ଟ ୧।

୪ ଅଞ୍ଜଳି ( ୨ୟ ସଂସ୍କରଣ ) ଟ ୧।

୫ ଭ୍ରାନ୍ତି ( ୨ୟ ସଂସ୍କରଣ ) ଟ ୦।୵

୬ ସ୍ଫୁଲିଙ୍ଗ ( ଜାତୀୟ ଅଗ୍ନି ସ୍ଫୁଲିଙ୍ଗ କବିତା ) ଟ ୦ ୬୵

୭ କାଳିବୋହୂ ( ଗାର୍ହସ୍ଥ୍ୟ ଉପନ୍ୟାସ ) ଟ ୦।/

୮ ନାଅତଣ୍ଡି ( ହସି ହସି ପେଟ ପୀଡ଼ା ହେବା ବହି ) ଟ ୦ ୬

୯ ଉଚ୍ଛ୍ୱାସ ( ଗୀତି କବିତାର ଅମୃତ ନିର୍ଝର ) ଟ ୦ ୬

୧୦ ଆହ୍ୱାନ ( ସ୍ୱରାଜ ଯୁଦ୍ଧର ଅଗ୍ନିମୟ ଡାକ ) ଟ ୦ /

## ନୂତନ ପ୍ରକାଶିତ

୧୧। ଗୋବର ଗୋଟେଇ ( ଚକ୍ରଧର ମହାପାତ୍ର ) ଟ ୦ ୬

୧୨। ଅପୂର୍ଣ୍ଣ ପ୍ରେମ ( ,, ) ଟ ୦।୵

## ଅମୂଲ୍ୟ ପୁସ୍ତକ

୧୩ ପ୍ରେମ ଚିନ୍ତାମଣି ( ରାଧାକୃଷ୍ଣ ଲୀଳା ସନ୍ଦର୍ଭ ) ଟ ୧୧

ପ୍ରାପ୍ତିସ୍ଥାନ—

ଓଡ଼ିଶାର ଯେ କୌଣସି ପୁସ୍ତକ ଦୋକାନ